# ଲୁଲୁ ଓ ଭାଲୁ

ଡଃ ହେମନ୍ତ କୁମାର ଦାସ

ପ୍ରକାଶକ :

ସାହିତ୍ୟ ପ୍ରତିଷ୍ଠାନ

ଚଣ୍ଡିଛକ, କଟକ-୮

# ଲୁଲୁ ଓ ଭାଲୁ

ଲେଖକ :

**ଡଃ ହେମନ୍ତ କୁମାର ଦାସ**

ପ୍ରକାଶକ :

**ସାହିତ୍ୟ ପ୍ରତିଷ୍ଠାନ**

ଚଣ୍ଡି ଛକ, କଟକ-୮

ପ୍ରକାଶନ କାଳ : ୧୯୯୧

ମୁଦ୍ରଣ :

**ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍**

ମିଶନ୍ ରୋଡ଼, କଟକ-୧

ମୂଲ୍ୟ :

# ଏଥିରେ ଅଛି.....





# ସେଦିନ ଝିଅଟିକଥା

ଝିଅବେଳେ ଗପ କହୁ କହୁ ବୋଉ ଶୋଇ-ପଡ଼ୁଛି । ବଡ଼ ଭଉଣୀ ଟୁଲୁ ଯାଇଚି ସ୍କୁଲକୁ । ରୀତାଅପା ନଛାଡ଼ିଆ । ବାପା ବାହାରକୁ କୁଆଡ଼େ କାମରେ ଯାଇ-ଛନ୍ତି । ଘରର କାମଦାମ କରିବାକୁ ଯୋଉ ଚାକରାଣୀଟି ଥାଏ, ସେ ବି ଗଲାଣି ତା' ଘରକୁ । କେହି କୁଆଡ଼େ ନାହାନ୍ତି ।

ଝିଅବେଳେ ଲିଲିକୁ ମୋଟେ ନିଦ ମାଡ଼େନାହିଁ । ଆଖି ବୁଜି ଅବା କେତେବେଳଯାଏ ବିଛଣାରେ ପଡ଼ିବ ? ଏ ବଡ଼ ଲୋକମାନେ କେମିତି ଚୁଟ୍ କରି ଶୋଇ ପଡ଼ନ୍ତି କେଜାଣି !

ବୋଉ କହୁଥିଲା ବେନୁଆକୁ କାଳସୀ ଲାଗିବା କଥା । ବେନୁଆକୁ ସେ ଦେଖିଚି । କାଠ ଚିରିବାକୁ, ନହେଲେ ବାରି ହାଣିବାକୁ ବେଳେବେଳେ ସେ ତାଙ୍କ ଘରକୁ ଆସେ । ବୋଉ ପାଖରେ ନାହୁଲି ହୋଇ ଖାଇବାକୁ ମାଗେ । ଲୁଗା ପଟା ମାଗେ । ତାକୁ ପୁଣି କାଳସୀ ଲାଗନ୍ତି କେମିତି ? କାଳସୀ କିଏ ? ସେ କୋଉଠି ଥାଆନ୍ତି ?

ବେନୁଆଟା ଘର ମିଛୁଆ । ସେ ଦିନ ବୋଉ ଆଗରେ କହୁଥିଲା, ତାକୁ କୁଆଡ଼େ ଏବେ ଦିନେ ରାତିରେ

କୁଳଦେଇ ଠାକୁରାଣୀ ସପନେଇଲେ । ନଜେ ତା’ଆଗରେ ଆସି ଠିଆ ହୋଇଗଲେ ।

ହଳଦ ଗୁରୁ ଗୁରୁ ଦେହ । ଚୁଆ ଚନ୍ଦନର ମହକରେ ଘର ଫାଟି ପଡ଼ୁଚ । ନାକରେ ନୋଥ, ନାକଚଣା, ଚେଣର, କାନରେ କୁଣ୍ଡଳ, ମଥାରେ ମଥାମଣି, ହାତରେ ଚୁଡ଼ି, ଖଡ଼ୁ, ପଇଂଚ, ବାଲି ବଟଫଳ, ଦମଦମା, ବାହୁରେ ତାହୁତ, ଦଶ ଆଙ୍ଗୁଠିରେ ଟଙ୍କାଛାପ ଏଡେ ଏଡେ଼ ମୁଦ, ଅଣ୍ଟାରେ ଗୋଠ, ଗଳାରେ ଗୁପସର, ଚକି, ହରଡ଼ ଫାଳଆ ଆଉର କେତେ କେତେ ହାରମାଳ ନାହି ଯାଏ ଲମ୍ବିଚ, ପାଦରେ ପାହୁଡ଼, ନେପୁର, ପାଉଞ୍ଜି ବେକରେ ପୁଣି ପଡ଼ିଚ ନାଲି ଟକ ଟକ ମନ୍ଦାର ଫୁଲର ମାଳ । ପିନ୍ଧିଛନ୍ତି ଷୋଳ ହାତର କାଳିଆ ଶାଢ଼ୀ। ରୁପାର ଜରକାମ ଚକମକ କରୁଛି । ସାକ୍ଷାତ୍ ଆସି ବେନୁଆ ଆଗରେ ଉଭା ହୋଇଗଲେ ।

ଗରଜି କହିଲେ ଆରେ ବେନୁଆ, ମୋ’ଇଁ ଘର ଓଳି ତଳେ ଧୂଳିମାଟିରେ ମିଶି କୋଉ କାଳୁ ପଡ଼ିଛରେ । ଯଦି ତୁମମାନଙ୍କର ଭଲ ମଙ୍ଗଳ ଅଛି, ତେବେ ଚଞ୍ଚଳ ମନ୍ଦିର ତିଆର କରଦିଅ । ନ ହେଲେ ଏ ଗାଁ ଛାଡ଼ି ଚାଲିଯିବି । ଆଉ ଏ ଗାଁ ବାଲାଙ୍କର ସରବନାଶ ହେବ । ସବୁଘରୁ ଗୋଟିଏ ଗୋଟିଏ ମୁଣ୍ଡ ନେବି । ପଛକୁ ମୋତେ ଆଉ ଦୋଷ ଦେବ ନାଇଁରେ ।”

ବେନୁଆ କଥା ଶୁଣି ବୋଉ ଡର ଯାଇଥିଲି । ମାଆଲୋ, ଶଙ୍ଖେ ପୂରାଇ ଚଟକେ ଉହାଡ଼ ଏ ଘରକୁ

ରଖଲେ ମା' ପଥର ଘର ସାନ୍ତାଣୀ । ତତେ କଳାଶାଢ଼ୀ ପିନ୍ଧେଇବ । ଚୂଆ ହଳଦୀରେ ମାଜଣା କରେଇବ ଲୋ ମା'-ଏତକ କହି ବୋଉ ବେକରେ ଲୁଗାକାନି ଗୁଡ଼ାଇ ଅନେକ ବେଳଯାଏ ଠାକୁରାଣୀଙ୍କୁ ପ୍ରଣାମ କଲା ।

ବୋଉକୁ ଏମିତ ଉଣ୍ଡୁଇ ଦେଇ ବେନୂଆ ସେଦିନ ଚାଉଳ ଆଉ ପଇସା ନେଇ ବିଦା ହୋଇ ଯାଇଥିଲା । ଲୁଲୁ ବୁଝିଥିଲା, କାଳସୀମାନେ ହେଉଛନ୍ତି ଠାକୁରାଣୀ । ଏତେ ଲୋକ ଥାଉ ଥାଉ ଠାକୁରାଣୀ ବେନୂଆ ଭଳି ଅପର ଛଦନିଆ ଲୋକଟାକୁ କାହିଁକି ବାଛିଲେ ?

ମୁହଁ ସାରା ଗାଡଗାଡ଼ ଦାଗ । ସେ କୁଆଡ଼େ ପିଲା-ଦିନରେ ତାକୁ କୁଆଡ଼େ ଠାକୁରାଣୀ ହୋଇଥିଲେ । ଠାକୁରାଣୀ ହେଲେ କଣ ଏମିତ ମୁହଁ ସାରା ଗାଡ଼ କରି-ଦେଇ ଯାଆନ୍ତି ? ବେନୂଆ ତ ଠାକୁରାଣୀଙ୍କ ନିଜ ଲୋକ । ତା' ମୁହଁରେ ସେ ଗାଡ଼ କଲେ କାହିଁକି ? କେଡ଼େ ଭୟଙ୍କାରିଆ ତା କଳା ମୁହଁ ! ସେଇଥିରେ ପୁଣି କପାଳରେ ଗୋଟାଏ ଲମ୍ବ ସିନ୍ଦୂର କଳି ମାରିଥିବ । ଆଖି ଦିଇଟା ଏତେ ଲାଲ ଯେ, ଦେଖିଲେ ଡ଼ର ମାଡ଼ିବ ।

ପିନ୍ଧିଥିବ ନାଲିଆ ଗାମୁଛା ଖଣ୍ଡେ । ସେଇଥିରୁ ଖଣ୍ଡେ ମୁଣ୍ଡରେ ବାନ୍ଧିଥିବ । ସବୁବେଳେ ଠାକୁରାଣୀ ବର ମୂଳେ ଆଖିବୁଜି ପଡ଼ିଥିବାର ଲୁଲୁ ଦେଖିଚି ।

ଚୂଲୁଅପା କହୁଥିଲା, ବେନୂଆକୁ ପିଲା ଦିନେ କୁଆଡ଼େ ବସନ୍ତ ବୋଲି ଗୋଟାଏ ରୋଗ ହୋଇଥିଲା । ସେଥିରେ ଦିହସାରା ବଡ଼ ବଡ଼ ଫୋଟକା ହୋଇ ଘା

ହୋଇଯାଏ । ଯେଉଁମାନେ ଭଲ ହୋଇଯାନ୍ତି, ସେମାନଙ୍କ ଦେହରେ ସେଇ ଘା ଦାଗ ରହିଯାଏ ।

ସତ କଥା ତ । ଲୁଲୁ ସେଦିନ ତାଙ୍କ ବାଉପଟ ବଉଳ ଗଛରେ ଚଢ଼ିଥିଲା । ନଇଁକା ଡ଼ାଳ ଖଣ୍ଡିକରେ ବସି ଝୁଲୁ ଝୁଲୁ ମଚ୍ କରି ଡାଳ ଭାଙ୍ଗି ପଡ଼ିଲା । ଲୁଲୁ ତଳେ ପଡ଼ିଗଲା । ତା ଜଙ୍ଘରେ ଖଣ୍ଡେ ଖପରା ପଶିଗଲା । ଘା' ତ ଅନେକ ଦିନ ପରେ ଶୁଖିଗଲା । ସେଇ ଦାଗ କିନ୍ତୁ ଏବଯାଏ ରହିଛି ।

ବୁଲୁ ଅପା ଆହୁରି କହୁଥିଲା, ଯୋଉମାନେ ପିଲା-ଦିନେ ଟୀକା ନିଅନ୍ତି ନାହିଁ ସେମାନଙ୍କୁ ଏଇ ରୋଗ ହୁଏ । ଯେମାନେ ପିଲାଦିନେ ଟୀକା ନେଇଛନ୍ତି । ତେଣୁ ତାଙ୍କୁ କେବେ ଏ ରୋଗ ହେବ ନାହିଁ । ଦେଶରେ ସମସ୍ତେ ଏ ଟୀକା ନେଇ ସଇଲେଣି । ସେତେଣୁ ଏବେ ଆଉ ବସନ୍ତ ରୋଗ ଲୁଆଡ଼େ ଆମ ଦେଶରେ ନାହିଁ ।

ଲୁଲୁର ମନେ ପଡ଼ିଲା ଆଉ ଗୋଟିଏ ଦିନର କଥା । ସେ ଦିନ ଦେହୁରୀଆକୁ କାଳେସୀ ଲାଗିଥାଏ । ବେକରେ ମନ୍ଦାର ଫୁଲର ମାଳ ପକାଇ ଯାଉଁଳ ବେତଟାଏ ମୁଣ୍ଡ ଉପରେ ଦି ହାତରେ ଧରି ଦେହୁରୀଆ ନାଚୁଥାଏ ଢୋଲ ବାଜା ଆଉ ମହୁରୀର ତାଳେ ତାଳେ । ଶଉରା ଆଉ ତା' ଭାଇ ବଟିଆ ଅର୍ଦ୍ଧାଳୁଆ ଢୋଲ ପିଟୁଥାନ୍ତି ଆଉ ଉଦଣ୍ଡ ନାଚ ନାଚ ବୁଲୁଥାଏ ଦେହୁରୀଆ । 'ମତେ ଆଉ ଦୋଷ ଦେବ ନାହିଁରେ, କହି ଗୋଟାଏ କଳକଳା ରଡ଼ିଛାଡ଼ି ଦେହୁରୀଆ ମୁଣ୍ଡ ଉପରି ବେତକୁ ତଳକୁ ନୁଆଇଁ ପାଖରେ

ଠିଆ ହୋଇଥିବା ଭରତଆ ପିଠିରେ ସପାସପ୍ ବେତ ବର୍ଷା କରି ଦେଇଗଲା । ଭରତଆ ଜୀବନ ବକଳରେ



ଭୂଇଁରେ ଗଡ଼ିଯାଉଥାଏ ଆଉ ପାଟି କରୁଥାଏ !- "ଏ ମୁଣ୍ଡ ରଖନ୍ତି ମା, ମୋ ଅପରାଧ କ୍ଷେମା କରନ୍ତି ମା । ଆଉ ଏ ଗୁହଣ୍ଡିଆ କାମ କେବେ କରିବି ନାହିଁ ।"

ପାଖରେ ଠିଆ ହୋଇଥିଲେ ଦୀପୁ ଭାଇ । ବାହାରେ କୋଉଠି ପଡ଼ନ୍ତ । ସେ ଆଉ ସହି ପାରିଲେ ନାହିଁ । ବେନୁଆର ହାତକୁ ଜୋରରେ ଧରି ପକାଇଲେ । ଗର୍ଜନ କରି କହିଲେ,"ଆଉ ଥରେ ଯଦି ତୁ ଭରତଆକୁ ମାରିବୁ, ଆଜି ତୋ କାଳସାପ ପଣିଆ ଛଡ଼େଇ ଦେବି ।"

ବେନୁଆ କଟମଟ କରି ଦୀପୁ ଭାଇଙ୍କ ଆଡ଼କୁ ଅନାଇଲା । ପୁଣି ଗୋଟାଏ ରଡ଼ିଛାଡ଼ି କହିଲା—ତତେ ଜାଗ କଞ୍ଚା ଚିହ୍ନେଇ ଦିବରେ ଦାସ ଘର ପୁଅ । ଦ'ଧାଡ଼ି ପାଠପଢ଼ି ତୁ ଆଉ ଇନ୍ଦ୍ର ଚନ୍ଦ୍ର ମାନୁ ନୋଉ ନା— ଦେଖିବୁ

କିଏ ତୋ ପିଠିରେ ପଡ଼ିବ ଆସି । ଆଜି ସୁତ ପାହିବ ନାହିଁରେ, ତତେ ନଚେଁ ଖାଇବି-ଖାଇବି-ଖାଇବି,ହେଲ ବୁଝ ମୋର ପ୍ରତିଜ୍ଞା ।

ଦୀପୁଭାଇ ଆଉ ସମ୍ଭାଳି ପାରିଲେ ନାହିଁ । ବେନୁଆ ହାତରୁ ବେତ ଛଡ଼େଇ ନେଇ ଆଖି ବୁଜା ମାଡ଼ ଚଢ଼େଇଗଲେ । ବେନୁଆ ଦି ହାତ ଦେଖେଇ ରୋକିବାକୁ ଚେଷ୍ଟା କଲା । ବର୍ଷାପାଣି ପରି ମାଡ଼ ଛେଚ ହୋଇ ଯାଉଥାଏ । ବେନୁଆ ଜୀବନ ବିକଳରେ ଦୌଡ଼ିପଳାଇ-ବାକୁ ଲାଗିଲା । ସେଥିରେ ବି ରକ୍ଷା ନାହିଁ । ଦୀପୁ ଭାଇ ତାକୁ ଗୋଡ଼େଇ ଗୋଡ଼େଇ ପିଟିଲେ । ଶେଷକୁ ବେନୁଆ ଆଉ ପାରିଲା ନାହିଁ । ଚେତା ହରାଇ ଭୂଇଁରେ ଲୋଟି ପଡ଼ିଲା ।

ଦୀପୁ ଭାଇ ରାଗରେ ସାଁ ସାଁ ହେଉଥାଆନ୍ତି । ଦି'ଚାରି ଜଣ ଲୋକ ତାଙ୍କୁ ଧରି ରଖି ନଥିଲେ ସେଇଦିନ ବେନୁଆର ଦଫାରଫା ହୋଇ ଯାଇଥାଆନ୍ତା ।

ପଛରେ ଲୋକେ ଦୀପୁଭାଇଙ୍କି କାଇଲି କଲେ । ଭରତଆ କୁଆଡ଼େ ବଇନ ଗୁଡ଼ିଆ ବାରିରୁ ଏଡ଼େବଡ଼ ପାଟକପୁରା କଦଳୀ କାନ୍ଦି ଚୋରି କରିଥିଲା । ଠାକୁରାଣୀଙ୍କି କୋଉକଥା ଅଜଣା ? ସେ ସେଇଥି ପାଇଁ ଭରତଆକୁ ଦଣ୍ଡ ଦେଉଥିଲେ । ଭରତଆ ତ ନିଜେ ମାନୁଚି ।

ଦୀପୁଭାଇ ଗମ୍ଭୀର ହୋଇ କହୁଥିଲେ ଚୋରି ଯଦି କଲା, ସେଥିପାଇଁ ଥାନା ପୁଲିସ୍ ଅଛି । କାହାକୁ ଏମିତି

ମାରିବା ଆଇନ୍‌ରେ ମନା । ବଦମାସ ବେନୁଆ ଗାଁ ଲୋକଙ୍କୁ ଡ଼ରାଇ ଏଠି ଗୋଟାଏ ବ୍ୟବସାୟ ଫାନ୍ଦିଛି । ଆଜି ତା'ର ଦନେକୁ ମୋର ଦନେ ।

ଏତକ କହି ଦୀପୁଭାଇ ପୁଣି ବେନୁଆକୁ ମାରିବାକୁ ଯାଉଥିଲେ । ଏତକ ବେଳେ କାହାଠାରୁ ଖବର ପାଇ ଦୀପୁଭାଇଙ୍କ ବୋଉ କାନ୍ଦି କାନ୍ଦି ଆସି ସେଠି ପହଞ୍ଚି- ଗଲେ । ଭୟରେ ତାଙ୍କ ମୁହଁ ଶୁଖି ଯାଇଥାଏ ।

ସେ ଦୀପୁ ଭାଇଙ୍କ ଆଡ଼କୁ ଅନାଇଲେ ନାହିଁ । ବେକରେ ପଣତ ଗୁଡ଼ାଇ ବେନୁଆ ଗୋଡ଼ତଳେ ଢୁ ଢୁ ମୁଣ୍ଡ ପିଟିବାକୁ ଲାଗିଲେ । କହିଲେ - ଦୀପୁଟା ଅଜ୍ଞାନୀ ମୂର୍ଖ ବାଳୁତ ପିଲାଟା । ତା ଦୋଷ ଧରିବୁ ନାହିଁଲୋ ମା । ତା ପାଇଁ ମୁଁ ଦାନ୍ତରେ ତରଣ ଧରୁଛି । ତୋ' ଶରଣ ପଶୁଚି । ପିଲା ଦୋଷ କଲେ ମା କ'ଣ ତା ଦୋଷଧରେ ? ତାଙ୍କ ଆଖିରୁ ଧାର ଧାର ଲୁହ ବହିଯାଉଥାଏ ।

ଦୀପୁଭାଇ କଣ କରିବେ କିଛି ଭାବିପାରୁ ନଥିଲେ । ବୋଉକୁ ସେ ଡର ମାନନ୍ତି । ଗାଁ ସାରା ଲୋକେ ସେଠି ରୁଣ୍ଡ ହୋଇଥିଲେ । ସମସ୍ତଙ୍କ ମୁହଁରେ ଭୟ । କଣ ଗୋଟାଏ ଘଟିଯିବ ପରା ।

ମାଡ଼ଖାଇ ବେନୁଆ ଅଚ୍ଛାଡ଼ ହୋଇ ପଡ଼ିଥାଏ । ବାଜା ବି ବନ୍ଦ ହୋଇଯାଇଥାଏ । ଧନ୍ୟ କହିବ ଦୀପୁ ଭାଇଙ୍କ ସାହସକୁ ।

ସେ ନିଜ ବୋଉଙ୍କ ପାଖକୁ ଗଲେ । ତାଙ୍କୁ କିଛି କହିଲେ ନାହିଁ । ହାତ ଧରି ଉଠାଇଲେ । ତାପରେ ତାଙ୍କୁ ଧରି ଘରକୁ ଫେରି ଚାଲିଲେ ।

ସବୁ ଲୋକ ଯେମିତି ଅନାଇଥାନ୍ତି । ଭିନ ଭିନ କଥାବାର୍ତ୍ତା ହେଉଥାଆନ୍ତି ।

ଲୁଲୁ ବି ସେଦିନ ସେଠିକି ଦଉଡ଼ି ଯାଇଥିଲା । ସବୁ କଥା ନିଜ ଆଖିରେ ଦେଖିଥିଲା । ଘରକୁ ଫେରି ଆସିବା ପରେ ଅନେକ ରାତିଯାଏ ତାକୁ ନିଦ ହୋଇ ନଥିଲା । ବେନୁଆ ତ କହିଦେଇଥିଲା ଆଜି ରାତି ପାହିବ ନାହିଁ । ରାତିରେ ଦାସଘର ପୁଅ ଝାଡ଼ା ବାକ୍ସରେ ମରିବ ।

ଲୁଲୁ କାନେଇ ଥାଏ । ଦୀପୁଭାଇ ଘର ଆଡୁ କାନ୍ଦଣା ଶୁଭିବ ବୋଲି ଧରି ନେଇଥାଏ । ରାତିସାରା ଅନେଇ କେତେବେଳେ ଯେ ତାକୁ ନିଦ ହୋଇ ଯାଇଚି ଏକଥା ସେ ନିଜେ ବି ଜାଣିପାରିନାହିଁ ।

ନିଦ ଭାଙ୍ଗିଲା ବେଳକୁ ଖରା ପଡ଼ି ଗଲାଣି । ସେ ଧଡ଼ ପଡ଼ ହୋଇ ଉଠି ବସିଲା । ଟୁଲୁ ଅପା ବସି ବସି ପଢୁଚି । ଘରେ ସମସ୍ତେ ଯେଝା କାମରେ ବ୍ୟସ୍ତ । ରାତିରେ କୋଉଠି କିଛି ହେବାର ଜଣା ପଡୁନାହିଁ ।

ସେ ଟୁଲୁ ଅପା ପାଖକୁ ଚାଲିଗଲା । ଚୁପ୍ ଚୁପ୍ ତାକୁ ପଚାରିଲା ଦୀପୁଭାଇ ମରିଗଲା ?

ଟୁଲୁଅପା ବଡ଼ ବଡ଼ ଆଖିରେ ଅନାଇଲା । ତା'ପରେ ତାକୁ ଗାଳି ଦେଇ କହିଲା—ଚୁପ୍ ଅଲକ୍ଷଣା

ଟୋକା । ଦୀପୁଭାଇ ତ ସକାଳୁ ଆମ ଦାଣ୍ଡବାଟେ ନଈ ଆଡ଼କୁ ଯାଉଥିଲେ । ମୁଁ ନିଜେ ଦେଖିଛି । ସେ ମରିବେ କାହିଁକି ?

ଜ୍ବରର ଠିକ ମୁଣ୍ଡ ଉପରୁ ସତେ ଯେମିତି ଗୋଟାଏ ଘର ପାହାଡ଼ ଓହ୍ଲାଇ ଗଲା । ଜ୍ବରରେ ମଣିଷ ନାହାଁନ୍ତି ଯେତେବେଳେ ଆଉ କ'ଣ ଦିନରେ ମରିବେ ! ଏ ଗାଁରେ ତ ସମସ୍ତେ ଜ୍ବରରେ ମରନ୍ତି । କୁଶିଆର ବାପା, ରାଧୁର ବୁଢ଼ୀମା, ଫଗୁଆର ଅଜା ସମସ୍ତେ ତ ଜ୍ବରରେ ମରିଛନ୍ତି । ଦୀପୁଭାଇ ଯଦି ବଞ୍ଚିଛନ୍ତି ତେବେ ଆଉ ମରିବେ ନାହିଁ । ବଦ୍‌ମାସ୍ ବେନୁଆଟା ମିଛୁଆ ।

ଟୁଲୁଅପା ତାକୁ ଆଉ ଗୋଟିଏ ଖବର ଦେଲା । କାଲି ରାତିରୁ ବେନୁଆକୁ କୁଆଡ଼େ ଭାରି ଜର । ଆଖି ଖୋଲି ଅନାଉ ନାହିଁ । ଦୀପୁଭାଇ ତା' ପାଇଁ ଡାକ୍ତର ଡାକିବାକୁ ଯାଉଥିଲେ । ବାପା ପଚାରିଲେ ଯେ ସେ ସେଇ କଥା କହିଦେଇ ତରତର ହୋଇ ଚାଲିଗଲେ । ବାପା ବେନୁଆକୁ ଦେଖିବାକୁ ଯାଇଛନ୍ତି ।

ସେ ଥର ବେନୁଆର ଜର ଛାଡ଼ିବାକୁ ତିନି ଚାରି ଦିନ ଲାଗିଗଲା । ଦୀପୁଭାଇ ଲାଗି ନ ଥିଲେ ସେ କୁଆଡ଼େ ବଞ୍ଚି ନ ଥାନ୍ତା । ଯାହା ହେଉ, ସେଇ ଦିନଠୁଁ ବେନୁଆକୁ ଆଉ କାଳସୀ ଲାଗୁ ନ ଥିଲା ।

ଦୀପୁଭାଇ ବି ଅନେକ ଦିନ୍ ଗାଁକୁ ଆସୁନାହାନ୍ତି । ତାଙ୍କର କୁଆଡ଼େ ଶେଷ ପରୀକ୍ଷା । ଆଉ ଭିତରେ

ବେନୁଆକୁ ପୁଣି କାଳସର୍ପ ଲାଗିବ ନା କ'ଣ ? ବୋଉ ତ ସେଇ କଥା କହୁ କହୁ ଶୋଇ ପଡ଼ୁଛି ।

ବାହାରୁ ବାଜା ଶୁଣା ଯାଉଛି । ଦାଣ୍ଡଆଡ଼େ କିଏ ସବୁ ପାଟି କରି କରି ଯାଉଛନ୍ତି । ଲୁଲୁର ବି ଯିବାକୁ ମନ ହେଲା ।

ସବୁଦିନ ଶୋଇବା ଆଗରୁ ବୋଉ ଭିତରୁ କବାଟ ବନ୍ଦ କରିଦିଏ । ଝିଞ୍ଜିରି ଖୋଲିବାକୁ ଲୁଲୁର ହାତ ପାଏ ନାହିଁ । ବୋଉ ପୁଣି ଉଠି କବାଟ ଖୋଲିବାକୁ ଯାଏ, ସେ ଘର ଭିତରେ ବନ୍ଦୀ ହୋଇଥାଏ ।

ଆଜି କିନ୍ତୁ ବୋଉ କବାଟ ଦେବାକୁ ଭୁଲି ଯାଇଛି । ଝିଞ୍ଜିରି ଧୀର ପବନରେ ଦୋହଲି ସତେ ଯେମିତି ଲୁଲୁକୁ କହୁଛି । ଆରେ, ଆ—ଚାଲିଆ— ବାହାରକୁ ଚାଲିଆ ।

ଲୁଲୁ ଆଉ ଡେ଼ରି କଲା ନାହିଁ । ଖୁବ୍ ଆସ୍ତେ ବୋଉ ପାଖରୁ ଉଠିଆସିଲା । ଟିକିଏ ବି ଶବ୍ଦ ନ କରି କବାଟ ଖୋଲିଲା । କବାଟ ଫାଙ୍କରେ ଚୁପ୍‌ଚାପ୍ ବାହାରକୁ ଅନାଇଲା ।

ନା—କେହି କୁଆଡ଼େ ନାହାନ୍ତି । ହଳଦିଆ ରଙ୍ଗର ଖରାରେ ଅଗଣା ହସିଯାଉଛି । ଖରାରେ ଶୁଖା ହୋଇଛି ସୋରିଷ । ପଞ୍ଝାଏ ପାରା ବକ୍ ବକମ୍ ବକ୍ ବକମ୍ କରି ସେଇ ସୋରିଷ ଉପରେ ଘୂରି ବୁଲୁଛନ୍ତି । ଟିକି ଟିକି ଥଣ୍ଟରେ ସୋରିଷ ଖୁଣ୍ଟି ଖାଇଯାଉଛନ୍ତି ।

ଲୁଲୁ କବାଟ ଖୋଲି ବାହାରକୁ ବାହାରି ଆସିଲା । ପଛକୁ ଅନାଇଲା ବୋଉ ତା'ର ସେମିତ ଶୋଇଚି । ବାରଣ୍ଡାରେ ଯାଉ ଯାଉ ହାତରେ ଖଣ୍ଡେ ବାଡ଼ି



ଉଠାଇନେଲା । ବାଡ଼ି ହାତରେ ଲୁଲୁକୁ ଦେଖି ପଞ୍ଝାକ ଯାକ ପାରି ଡେଣା ଫଡ଼ ଫଡ଼ କରି ଛାତ ଉପରକୁ ଉଡ଼ିଗଲେ ।

ଲୁଲୁ ଜାଣେ, ସେମାନେ ମୋଟେ ଯାଇନାହାନ୍ତି । କିଛି ସମୟ ପରେ ଘରଆଡ଼କୁ ଅନାଇ ପୁଣି ଛାତରୁ ଓହ୍ଲାଇବେ । ମନ ଇଚ୍ଛା ସୋରିଷ ଖାଇବେ ।

ଲୁଲୁ ବି ଥରେ ଅଧେ କଞ୍ଚା ସୋରିଷ ପାଟିରେ ପକାଇ ଦେଇଚି । ଛି–ଛି କି ପିତା ! ପାରି ଗୁଡ଼ାକ ତାକୁ କେମିତି ଖାଆନ୍ତି କେଜାଣି ।

ଅନ୍ୟ ଦିନ ହୋଇଥିଲେ ଜୁଲୁ ସେଇଠି ଠିଆ ହୋଇଥାଆନ୍ତା । ଗୋଡ଼େଇ ଗୋଡ଼େଇ ପାଣ୍ଟିଙ୍କୁ ହୁରୁଡ଼େଇ ଥାଆନ୍ତା । ଆଜି କିନ୍ତୁ ସେ କିଛି କଲା ନାହିଁ ।

ତା' କାନରେ ବାଜା ଶବ୍ଦ ଗୁହାଳକୁ ବୁହା ବାଜୁଚ । ସେ ଜାଣେ ଠାକୁରାଣୀ ଘର ତଳ୍ ବାଜା ଶୁଭୁଚ । ଯେମିତ ହେଲେ ସେ ସେଇଠି କି ଯିବ ।

ଜୁଲୁ ଦାଣ୍ଡ ଘରକୁ ଆସିଲା । ଦାଣ୍ଡ କବାଟ ଠିଆ ମେଲା ହୋଇଚ । ପିଣ୍ଡାରେ ମୁହଁରେ ଓଦା ଗାମୁଛା ପକାଇ ଶୋଇ ଯାଇଛି ରଥିଆ । ସେ ତାଙ୍କର କୋଠିଆ । ବଲବାଡ଼ କଥା ବୁଝେ । ତାଙ୍କର ଘରେ ଥାଏ ।

ଜୁଲୁ ପାହାଚ ଓହ୍ଲାଇଗଲା । ଏଥର ଆଉ ତାକୁ ମନା କରିବାକୁ କେହି ନାହିଁ । ସମସ୍ତେ ଯିଏ ଯାହାର ଶୋଇଛନ୍ତି । ଏବେ ସେ ମନ କଲେ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇ ପାରିବ ।

ଫାଟକ ପାଖରେ ଠିଆ ହୋଇ ଜୁଲୁ ଥରେ ଘର ଆଡ଼କୁ ଅନାଇଲା । ସେ ଜାଣେ ବୋଉ ଘଣ୍ଟା ଆଗରୁ ଉଠିବ ନାହିଁ । ବାପା ବି ତା' ପୂର୍ବରୁ ଫେରିବେ ନାହିଁ । ଟୁଲୁ ଅପାର ସ୍କୁଲ ବନ୍ଦ ହେବ ସାଢ଼େ ଘଣ୍ଟାରେ । ତା' ଆଗରୁ ସେ ଫେରି ଆସିବ । ଚୁପ୍‌ଚାପ୍ ବୋଉ ପାଖରେ ଶୋଇ ପଡ଼ିବ । କେହି କିଛି ଜାଣି ପାରିବେ ନାହିଁ ।

ମନ ଖୁସିରେ ଜୁଲୁ ଏଥର ଫାଟକ ଖୋଲିଲା । କୁଆଡ଼େ ଥିଲା ବାଳୁଆ କୁକୁରଟା । ଦଉଡ଼ି ଆସି ତା' ପାଖରେ ଠିଆ ହୋଇ ଲାଙ୍ଗୁଡ଼ ହଲାଇବାକୁ ଲାଗିଲା ।

ଝାଲୁଆ ଲୁଲୁର ସାଙ୍ଗ । ଲୁଲୁ ଯୁଆଡ଼େ ଯିବ ଝାଲୁଆ ତା' ପଛେ ପଛେ ଯିବ । ଏଡ଼େ ଟିକିଏ ହୋଇଥିଲା ଲୁଲୁ ତାକୁ ଘରକୁ ଆଣିଥିଲା । ଦିନ କେଇଟା ଭିତରେ ଗୋଟାଏ ବଡ଼ କୁକୁର ହୋଇଗଲାଣି ।

ଲୁଲୁ ତା' ଆଡ଼କୁ ଅନାଇଲା କହିଲା-ଯିବୁ କିରେ ଝାଲୁଆ ? ଝାଲୁଆ ଘନ ଘନ ଲାଞ୍ଜ ହଲାଉଥାଏ ।

ଲୁଲୁ କହିଲା-ଚାଲଯିବା, ଆଉ ବୋଉ ଉଠିବା ଆଗରୁ ଘରକୁ ଫେରିଆସିବା ।

ଏଥର ଲୁଲୁ ଗାଁ ଦାଣ୍ଡରେ ପାଦ ଦେଲା । ପଛେ ପଛେ ଝାଲୁଆ ।

ସେମାନେ ବାଜା ଶୁଭୁଥିବା ଆଡ଼କୁ ଚାଲିଲେ ।



# ବାଟଘାଟର କଥା

ନଛାଟିଆ ଗାଁ ଦାଣ୍ଡରେ ଯାଉ ଯାଉ ଢ଼ୁଢ଼ୁ ଘରଆଡ଼କୁ ଅନାଉଥିଲା । ନାଃ—କେହି କୁଆଡ଼େ ନାହାନ୍ତି । ଦୂରରୁ ବାଜା ଶବ୍ଦ ସାଙ୍ଗରେ ରହି ରହି



ଶୁଭୁଛି ଗୋଟାଏ ହନୁମାଙ୍କ ଡ଼ର 'ଖୋକର ଖୋ' ରଡ଼ । ଭୁଲୁଆର କାନ ଠିଆ ହୋଇଗଲାଣି ।

ଭୁଲୁଆର କରାମତ ଲୁଲୁ ଜାଣେ, ଏ ଗାଁର ସମସ୍ତେ ଜାଣନ୍ତି । ବିଶେଷ କରି ମାଙ୍କଡ଼ ପଲ । ପିଣ୍ଡାରେ ଡେଇଁ ଡେଇଁ କଖାରୁ ଡଙ୍କ ଓଟାରି ଖାଉଥିଲାବେଳେ ହେଉ, ବା ସଜନା ଗଛରୁ ପତର ଉଣ୍ଡି ଚୋବାଇ ଖାଉଥିବା ବେଳେ ହେଉ, ମାଙ୍କଡ଼ ପଲ ତରଙ୍ଗ ତରଙ୍ଗ ହୋଇ

ଚାରିଆଡ଼କୁ ଅନାଉ ଥାଆନ୍ତି । କୋଉଠି ଭାଲୁଆ ଆସିଲା କି ?

ଭାଲୁଆ ବି ତାର ତାକ ତରକରେ ଥାଏ । ମୋଟେ ପାଟି ତୁଣ୍ଡ କରେ ନାହିଁ । ଟିକିଏ ବେକାଇଦାରେ ପାଇଲେ ତଣ୍ଟି ଝୁଣି ଲହୁ ଲୁହାଣ କରେ । ସେମିତି ଦରକାର ପଡ଼ିଲେ ଗଛ ଅଧାଯାଏ ବି ଚଢ଼ିଯାଇ ଲାଙ୍ଗୁଡ଼ ଧରି ଓହ୍ଲି ପଡ଼େ । ମାଙ୍କଡ଼ମାନେ ସତେ ଯେମିତି ତା'ର ଜନମ ବଇରୀ !

ଏଥର ମାଙ୍କଡ଼ମାନେ ବି ସାବଧାନ ହୋଇ ଗଲେଣି । ପାରୁ ପର୍ଯ୍ୟନ୍ତ ଭାଲୁଆର ଇଲାକା ଭିତରକୁ ପାଦ ବଢ଼ାନ୍ତି ନାହିଁ । ସେଥିରେ ଯେ ଖୁବ୍ ଗୋଟାଏ ଯାଏ ଆସେ ତା' ବି ନୁହେଁ । ମାଙ୍କଡ଼ଙ୍କ ବାସନା ପାଇବା ମାତ୍ରେ ଭାଲୁଆ ତନିଯାଇ ତେଇଁ ତାଙ୍କ ଉପରେ ଚଢ଼ାଉ କରେ । ଗାଁ ପାର କରି ଦେଇ ତେବେ ଯାଇ ଫେରେ । ଯାଏ ମାସେ ପନ୍ଦର ଦିନ । ମାଙ୍କଡ଼ ଗୋଠ ପୁଣି ଫେରନ୍ତି । ଭାଲୁଆର କାମ ଚଢ଼ିଯାଏ । ଏମିତି ଚାଲିଥାଏ ।

ଲୁଲୁର ମନେ ପଡ଼ୁଚି ଭାଲୁଆର ପିଲାଦିନ କଥା । ବଣୁଜ ସାହୁ ବାରି ପାଲଗଦାରେ ତା' ମା ଛୁଆ କରିଥିଲା । ପାଟିରେ କାମୁଡ଼ି ଗୋଟା ଗୋଟା କରି ଚାରିଟା ଛୁଆ ନେଇ ଦାମ ବାରିକ ଡିଙ୍କିଶାଳରେ ରଖିଥିବାବେଳେ କୁଆଡ଼େ ଥିଲା ଗୋଧ ମାଙ୍କଡ଼ଟା—ଖୋଜିକରି ଖୋ' କରି

ମାଡ଼ ଆସିଲା । ଭଜୁଆର ମା'ର ଦୁଇ କାନଧର ଙ୍ଗ୍ୟପୁଡ଼ା ସେକ ଦେଇଗଲା । ବର୍ତ୍ତରୀ କୁତୀଟା କ'ଣ ଆଉ କରନ୍ତା ? ଜୀବନ ବକଳରେ ଧାଇଁ ପଳାଉ ପଳାଉ ଦାମ ବାଉକର ଖଣ୍ଡିଆ କୂଅରେ ଗଳ ପଡ଼ିଲା । ତା' ମୁହଁରେ ସେତେବେଳେ ଏଇ ଭଜୁଆ ।

କୁକୁରର କାଉଁ କାଉଁ ରଡ଼ରେ ଗାଁ ଲୋକ ତ ଗଦା ହୋଇ ପଡ଼ିଲେ । ତେବେ ଭଙ୍ଗା କୂଅ ଭିତରୁ ମା' ଝୁଆଙ୍କୁ କାଢ଼ିବାକୁ କେହି ଆଗେଇ ଆସିଲେ ନାହିଁ । ଭୁଷ୍ଠାଟାରେ ଖାଲି ହୋ ହୋ ହୋଇ ଗୋଟିଏ ଗୋଟିଏ ବାଟ କାଟିଲେ । ରଥିଆ ସାଙ୍ଗରେ ଜୁଜୁ ବ ତାମସା ଦେଖିବାକୁ ଆସିଥିଲା ।

କଣ ତା' ମନକୁ ଆସିଲା ବେକଜାଣି ସେ ରଥିଆକୁ କହିଲା-ରଥିଆ ଭାଇ, ତୁ କୂଅ ଭିତରୁ କୁକୁରକୁ କାଢ଼େ । ରଥିଆ କଥାଟାକୁ ହସରେ ଉଡ଼ାଇ ଦେଲା । ଭଙ୍ଗା କୂଅ, ତା' ଭିତରେ ସାପ ବିଛା ପଣ ପଣ । ତା'ର ଗରଜ ପଡ଼ୁ ନାହିଁ ଛାର କୁକୁର ଦ'ଟାଙ୍କୁ କାଢ଼ିବାକୁ ସିଏ କୂଅରେ ପଶିବ !

ଜୁଜୁ କିନ୍ତୁ ଛାଡ଼ିଲା ନାହିଁ । ତା'ର ଗୋଟିଏ କଥା । ଯେମିତ ହେଲେ କୁକୁରଙ୍କୁ କାଢ଼ିବାକୁ ହେବ । ରଥିଆଠୁ ନାସ୍ତି ବାଣୀ ଶୁଣି ଜୁଜୁ ତା'ର ଶେଷ ହତଆର ଚଳାଇଲା । ଭେଁ ଭେଁ ରଡ଼ରେ କାନ ଅତଡ଼ା ପଡ଼ିଗଲା ।

ରଥିଆ ବଡ଼ ଦୋଧାଇରେ ପଡ଼ିଲା । ବାବୁ ଘର ପିଲା । କାନ୍ଦିଲାଣି ଯେତେବେଳେ ଆଜି ସବୁ ଗାଳ ତାରି

ଉପରେ ପଡ଼ବ । ତା' ପାଇଁ କୂଅ ଭିତରେ ପଶିବାଟା ଏମିତ ବଡ଼ କଥା ନୁହେଁ ଯେ । ମାସକେ ଥରେ ଅଧେ ବାଲ୍ଟି ନୋଟା କାଢ଼ି ଚାଲୁ ସେ କୂଅ ଭିତରେ ପଶୁନାଇଁ କ ? ହେଲେ ଏଇଟା ଭଙ୍ଗା କୂଅ । ଏଇ ଯାହା ।

ଲୁଲୁର ସବୁ ଅଳ ଅଝଟ ରଥିଆ ପାଖରେ । କଙ୍କି ଧର ତା' ଲାଞ୍ଜରେ ସୂତା ବାନ୍ଧି ଉଡାଇବାଠୁ ଆରମ୍ଭ କର କଅା ବୁଦାରୁ ନେଉଳ ଛୁଆ ଧର ଆଣିବାରେ ରଥିଆ ହେଉଚ ଲୁଲୁର ହତେଇ ।

କ'ଣ ଆଉ କରିବ ? ଘରକୁ ଗଲେ ବଚରା ପିଲାଟା ମାଡ଼ ଗୁଡ଼ାଏ ଖାଇବ । ତା' ଅପେକ୍ଷା ବରଂ କୂଅରେ ପଶି କୁକୁରଟା ବାହାର କର ଦେଲେ କାମ ବଢ଼ିଲା ।

ରଥିଆ ଦାମକୁ କହିଲା ଦାମା'ଙ୍କ ଶଙ୍କା ପଟେ ଆଉ ଟୋକେଇଟାଏ ଆଣେ । ସାଙ୍ଗରେ କୂଅ ଦଉଡ଼ିଟା ବି ଆଣିଥିବୁ । ଦେଖଣା ହାରୀଏ ଗୋଟି ଗୋଟି ଖସିଲା ବେଳଠୁ ଦାମର ମୁହଁ ଶୁଖିଯାଇଥିଲା । ଅଳପାଇସା କୁକୁରକୁ ମରିବାକୁ ଆଉ କୋଉଠି ଜାଗା ମିଳଲା ନାହିଁ-ତା'ର ବାଣ ଥିଲା ? ମା'ଛୁଆତ ଦଣ୍ଡନ ଓଳଣ୍ଡକରେ ମରିବେ । ଗନ୍ଧରେ ଘର ଦୁଆର ଫାଟିଯିବ । କି ବୁଦ୍ଧି କରିବ ସେ ?

ଲୁଲୁକୁ କାନ୍ଦିବା ଦେଖି ତା' ମୁହଁ ଖୁସିରେ ଭରିଗଲା । ମନେ ମନେ ଲୁଲୁକୁ ସାବାସୀ ଦେଇ କହିଲା-ଯା ଚଲେଇ ଯା । ମୋତେ ଭୁଲି ଚିହ୍ନୁନାଇଁ । ପାଟିରେ କହିଲା,- ହଁ କ'ଣଆଉ କରିବୁ ? ପିଲାଟା କାନ୍ଦିଲାଣି

ଯେତେବେଳେ କୁକୁରତ କାଢ଼ିବାକୁ ହେବ । ତା' ମନଟା ବୁଝିଯାଉ । ମତେ ବଳାନ୍ତା ନାହିଁ ଯେ, ଗୋଡ଼ଟାରେ ମାଛ ଆଖିଆ ହୋଇ ପାଦ ଦ'ଟା ତଳେ ଲଗୁ ନାହିଁ । କୂଅରେ ପଶିବ କେମିତ ?

ରଥିଆ କୂଅରେ ପଶି ଆଗ ଟୋକେଇରେ ମା' ଛୁଆଙ୍କୁ ଥୋଇଥିଲ । ଶିକାରେ ଟୋକେଇଟାକୁ ଥୋଇ ଦଉଡ଼ରେ ବାନ୍ଧି ଦେଇଥିଲ । ଉପରୁ ଦାମ ପାଣି କାଢ଼ିଲ ଭଳ ଟୋକେଇକୁ ବାହାର କର ଆଣିଥିଲ ।



ଦାମ ଠୋଉଁ ଗୋଟାଏ ଚୋଇଠା ଖାଇ ମା' ତ କାଉଁ କାଉଁ ହୋଇ ପଳାଇଲ । ରହିଗଲ ଛୁଆଟା । ତା'ର ଆଖି ଫିଟି ନାହିଁ ସିନା । ହେଲେ ବେଶ୍ ମୋଟା ସୋଟା ହୋଇଚ । ଝୁଲୁ ତାକୁ କାଖେଇ ଘରକୁ ବାହାରିଲ ।

ତା' ଘରେ ସେଇ କୁକୁର ଲଗି, ଘରେ ଲଗିଲ ପାଲ । ସେଇଟା ଘରେ ରହିଲେ ଟୁଲୁ ଅପା ଘର ଛାଡ଼

ବାହାର ଯିବ ବୋଲି ଧମକ ଦେଲା । ଲୁଲୁ ବି ଖିଆ ପିଆ ଛାଡ଼ି ମରଯିବ ବୋଲି ପାଲଟା ଧମକ ଦେଲା । ଶେଷକୁ ଲୁଆଟା ରହିଗଲା । ତା' ନାଁ ଦିଆଗଲା ଭାଲୁଆ ।

ସେଇ ଦିନଠୁ ଲୁଲୁ ଓ ଭାଲୁଆ ଗାଢ଼ ବନ୍ଧୁ ହୋଇ ରହିଗଲେ । ଭାଲୁଆ କେମିତି ସକାଳେ ନଥିଲା । ସତେ ଯେମିତ ଏ କଥା ସେ ଜାଣିପାରିଛି !

ଦାଣ୍ଡରେ ଠିଆ ହୋଇ ଲୁଲୁ ଏଇ ସବୁ ଭାବିଗଲା । ତା' ପରେ ଅନାଇଲା ଦେଖିଲା, ପାଖରେ ଭାଲୁଆ ନାହିଁ । ଲୁଲୁ ଜାଣେ ଭାଲୁଆ କୋଉଠି ଥିବା ତେଣୁ ସେ ତା' ପାଇଁ ମୋଟେ ବ୍ୟସ୍ତ ହେଲା ନାହିଁ ।

ଦେବୁଅ ମାସିଆ ଖରା ଟାଇଁ ଟାଇଁ ହୋଇ ଦହରେ ଗଲା ଯାଉଛି । ବେଳ କେତେ ହେଲାଣି କିଏ ଜାଣେ ? ଲୁଲୁ ଏଥର କାଳସୀ ଦେଖିବାକୁ ପାଦ ବଢ଼ାଇଲା ।

ତାଙ୍କ ଗାଁଟା ବହୁତ ବଡ଼ । ନଇକୂଳିଆ ଗାଁ । ଦାଢ଼ କାଟି କଆ କେତକୀ ବେତ ବଣ ଦେଇ ସାପେଇ ସାପେଇ ସୋଉ ନଇଟି ବହିଯାଉଛି, ନାଁଟି ତା'ର ଭାଲୁଆ ଖୋଇ । ବର୍ଷର ଅନ୍ୟ ସବୁ ଦିନେ ତ ଶୁଖିଲା ପଡ଼ିଥାଏ । ଗଣ୍ଡ ଜାଗାରେ ଯାହା ପାଣି ମହାଏ ଥାଏ । ହେଲେ ଉପର ମୁଣ୍ଡରେ ବର୍ଷା ହେଲେ ଭାଲୁଆ ଖୋଇର ରୂପ ବଦଳିଯାଏ । ସୁ ସୁ ଘୁ ଘୁ ଗର୍ଜନ କରି [redacted] ଫେଣର ଫୁତ୍କାର ଛାଡ଼ି ଗେରୁଆ ରଙ୍ଗର ଲୁଗା ପିନ୍ଧି ସେଇ ନାଇ ଧାଇଁ ଆସେ । ସାଙ୍ଗରେ ନେଇ ଆସେ କେତେ କୁଟା କାଠି, ପୋଡ଼ା

କାଠ ସପ ମଶିଣା । ଥରେ ଥରେ ଏମିତ ହୁଏ ଯେ, ନଈରେ ଘର ଦ୍ୱାର ଗାଈ ଗୋରୁ ବ ଭସି ଆସନ୍ତି । ଦେରସ୍ତା ଘରର ଗୋଟାଏ ଗ୍ଳ ଉପରେ ଲୋକଟାଏ ପାଟି କର କର ଭସି ଯାଉ ଥିବାର ଲୁଲୁ ଦେଖିଛ ।

ବଢ଼ି ଆସିଲେ ପିଲମାନଙ୍କର ମଉଜ। ଘଡ଼ିକୁ ଘଡ଼ି କାଠି ପୋତ ବଢ଼ି କମିଲା କ ବେଶି ହେଲା ମାପୁଥାଆନ୍ତି । ଗଙ୍ଗା ପୂଜନଙ୍କରେ ପିଠା ନେଇ ନଈରେ ପକାନ୍ତି । ଟକଟେ ଗୀତ ବୋଲନ୍ତି । ଲୁଲୁ ନଜେ ବ ତ ରଥିଆ ଭାଇ ଠାରୁ ବଢ଼ିଆ ଗୀତ ଶିଖିଛ ।"

ଗୁଡ଼ଆ ଘର ମୁଢ଼ି,
ବଢ଼ି ଯାଉ ଛାଡ଼ି ।"

ଗୀତରେ ବଢ଼ି ଛାଡ଼େ କ ନାହିଁ ନଈ ଜାଣିଥିବ । ତେବେ ବଢ଼ି ରହେ ମୋଟେ ୩।୪ ଦନ । ତା'ର ଭିତରେ ପୋଖରୀ, ନାଳ, ଜୋର ସବୁ ଏକାକାର ହୋଇଯାଏ । ପୋଖରୀ ହୁଡ଼ା ଡେଇ ବଢ଼ିପାଣି ଛୁଟେ ।

ରଥିଆ ଭାଇର ସେତେବେଳେ ନାକ ପୋଛିବାକୁ ତର ନାହିଁ । ଝୁ ଝୁ ବର୍ଷା ଭିତରେ ମୁଣ୍ଡରେ ପଖିଆଟା ଦେଇ ସେ ବିଲଆଡ଼େ ଗ୍ଳଯାଏ । ସାଙ୍ଗରେ ନେଇଥାଏ ଛୋଟ ଖଣ୍ଡେ ଜାଲ ଆଉ କୋଡ଼ଟାଏ ।

ଗୋଟାଏ ଉଚ ଜାଗା ଦେଖି ସେ ତଳ ଆଡ଼କୁ ପାଣି ବୋହି ଯିବା ପାଇଁ ଆଗ ଗୋଟାଏ ମା'ହାଣ୍ଡି କାଟି ଦଏ । ତା'ପରେ ଯେଉଁଠି ଦୁଇ ଗ୍ରର ଖଣ୍ଡ ବାଡ଼ ପୋତ ଦେଇ ଜାଲଟାକୁ ତହିଁରେ ଅଟକାଇ ଦଏ । ଜାଲ ଭିତର

ଦେଇ ପାଣି ତଳ ଅଡ଼କୁ ବହି ଗ୍ଲେ । ତା' ସାଙ୍ଗେ ସାଙ୍ଗେ ମାଛ ମାନେ ତଳକୁ ବସି ଯାଉ ଯାଉ ରଥିଆ ଭାଇ ଜାଲରେ ଧରା ପଡ଼ନ୍ତି । ପାଞ୍ଚ ଦଶ ମିନଟରେ ଜାଲ ବୋଝେଇ ହୋଇଯାଏ ।

ଘଣ୍ଟେ ଅଧ ଘଣ୍ଟେ ଭିତରେ ପାଛିଆଏ ମାଛ ନେଇ ରଥିଆ ଭାଇ ଧୁମୁ ଧୁମୁ ପାଦୁଲ ପକେଇ ଘରକୁ ବାହୁଡ଼ ଆସେ । ସତେତ କି ସେ ଗଡ଼ ଜିଣିଚି ! ଅଥଚ ସେ ତ ପ୍ରାୟ କିଛି କରେ ନାହିଁ । ମାହାଗ୍ଟା କାଟି ଦେଇ ମଉନୀ ବାବାଜୀ ଭଳି ବସିଥାଏ ଖାଲି ।

ମାଛ ଯେ ସେ କେତେ ଜାତର ! ଜହ୍ଲା, ଚଙ୍ଗୁଡ଼ି, ମଝୁରାଳି, କେରାଣ୍ଡି, ପୋହଳା ଠୁ ଆରମ୍ଭ କର ଚେଙ୍ଗ, ଗଡ଼ଶା, ତୋଡ଼ି ପର୍ଯ୍ୟନ୍ତ । ରୁପା ପାତଆ ପର ଚକ୍ ଚକ୍ କରୁ ଥାଆନ୍ତି ।

ରଥିଆ ଭଇ ତା'ର ଶିକାର ଅଭିଯାନରେ ବାହାର ପଡ଼ିଲେ ବୋଉ କଞ୍ଚା'ଲଙ୍କା ଆଉ ସୋରିଷ ବାଟି ରଖିଥାଏ । ବାଡ଼ିରୁ ତୋଳି ଆଣେ କଅଁଳ ପୋଇ ପତ୍ର କଖାରୁ ପତ୍ର । ଘରକୁ ମାଛ ଆସିବା ମାତ୍ରେ ଆଗ ଆଞ୍ଜୁଳାଏ ମାଛ ଧୋଇପକାଇ ଲୁଣ ତେଲ ମସଲା ଗୋଳାଇ ପୋଇପତ୍ର ଭିତରେ ରଖିଦଏ । ବାହାରେ ଗୁଡ଼ାଇ ଦଏ କଖାରୁ ପତ୍ର । ତା'ପରେ ଭଲ କର କଦଳୀ ପଟୁକାରେ ଗୁଡାଇ ତାକୁ ରଡ଼ ନିଆଁରେ ପୋତ ପକାଏ । ସ୍କୁଲରୁ ଫେର ସେଇ ପତର ପୋଡ଼ା ସାଙ୍ଗରେ ଭାତ-ଆହା, ସେ ପତର ପୋଡ଼ା ଟିକକ କ ସୁଆଦ ! ଲୁଳୁର ଜିଭ ନାଳେଇ ଅସିଲା ।

ନଈରେ ତ ଜାଣ ମାଛ ସାନ୍ତୁ ସାନ୍ତୁ । ରଥିଆ ଭାଇ କହେ,

"ବାଲୁଆ ଖାଇ ନଈ,
ପାଣି ପୋଷକୁ ମାଛ ପୋଷେ,
ନଅରେ ସବୁ ବୋହି"

ଖରା ଦିନେ ତାଙ୍କ ଗାଁ ପାଖ ଗଣ୍ଡରେ ବଡ଼ ଜାଲ ପଡ଼େ । କୋଡ଼ିଏ କି ତିରିଶି କେଉଟ ପାହାନ୍ତାରୁ ଜାଲ ମେଲି ଦେଇ ବେଳ ଓଳରେ ତାକୁ ଟାଣନ୍ତି । ଉପରକୁ ଆସିଲା ବେଳକୁ ଜାଲ ଭର୍ତ୍ତି ।

ବଡ଼ ବଡ଼ ରୋହୀ, ଭାକୁର, ଚିତଳ, ମିରିକାଳି ଏମିତି କି ଶେଉଳ ବାଳିଆ ବି ଧରା ପଡ଼ନ୍ତି । ନଈ କୂଳ ବର ଗଛ ତଳେ ମାଛର ପାହାଡ଼ ଜମା ହୋଇଥାଏ । ସେ ଦିନ ଗାଁ ପିଲାଙ୍କର କି ଖୁସି !

ଘରେ ଘରେ ମାଛ ଭଜା, ମାଛ ତରକାରୀ, ମାଛ ବେଶର ।

ଜୁଲୁ ଚାଲୁଥାଏ. ଆଉ ଏ ସବୁ କଥା ସବୁ ଭାବି ଭାବି କେତେବେଳେ ତା' ପାଟିକୁ ଲାଳ ଆସିଯାଉଥାଏ ତ ଆଉ କେତେବେଳେ ମାଛର ଆଇଁଷ ଗନ୍ଧରେ ନାକ ଫାଟି ପଡୁଥାଏ ।

କିଏ ଡାକିଲା—ଜୁଲୁ,—ନିଜ ନାଁ ଶୁଣି ଜୁଲୁ ପଛକୁ ଫେରି ଅନାଇଲା । ତା'ର ବଅସର ପିଲାଟିଏ । ଗୋଟିଏ ହାତରେ ଝୁଲେଇଛିଏ ଧରିଚି, ତା' ମୁହଁରେ ବଣ ସାରୁର ପତ୍ର

ଘୋଡା ହୋଇଚ । ଆଉ ହାତରେ ଧରିଚ ଗୋଟିଏ ବାଉଁଶ କଣି । ସେଥିରେ ଲମ୍ବ ସୂତା ବନ୍ଧା ହୋଇଚ ।

ଜୁଜୁ ପଚାରିଲା—ଏତ ଗଉଡ଼ ସାହୁର ମହୁଆ ପଚାରିଲା—କରେ, କୁଆଡ଼େ ବାହାରିଚୁ ?

ମହୁଆ କହିଲା - ଯାଉଚ ନଈ କୂଳକୁ । ମାଛ ଧରିବ । ଏ ସମୟେ ବହୁତ ମାଛ ଆସିଛନ୍ତି । ଗୋବରା, ଧନିଆଁ, ଭଗିଆ ସମସ୍ତେ ବନଶି ଖଡା ନେଇ ନଈ କୂଳରେ । ସୂତାରେ ଜିଆ ବାନ୍ଧିଦେଇ ପାଣିରେ ପକେଇ ଦେଲେ ମାଛ ଖାଉଛନ୍ତି । ମୋଟ ମୋଟ ଗୋଡ ବୁଢ଼ା ଚୁଙ୍ଗୁଡ଼ି ସବୁ ସାଙ୍ଗେ ସାଙ୍ଗେ ଥୋପ ଗିଳି ପକାଉଛନ୍ତି । ଖାଲି ଉପରକୁ ଟାଣି ଆଣିଲେ ହେଲା, ଘଡ଼ିକେ ଅଣ୍ଟାଏ ।

ଜୁଜୁ ଦେଖିଲା ବନଶିରେ କଣ୍ଟା ଲାଗି ନାହିଁ ଖାଲି ସୂତା ଖଣ୍ଡେ ଲେଖା ଝୁଲା ହୋଇଚ । ସେ ଦେଖିଚ, ରଥିଆ ଭାଇ



ବନଶିରେ ମାଛ ଧରେ । ଡୋର ଆଗରେ ଗୋଟିଏ କଣ୍ଟା ବନ୍ଧା ହୋଇଥାଏ । କଣ୍ଟାଟାରେ ଗୁଣ୍ଡି ଏଏ ଗୋଟିଏ

ଛୋଟ ମାଛ । ତାକୁ କହନ୍ତି ଜିଅଳ । ତା'ପରେ ତାକୁ ନେଇ ନଈ ପାଣିରେ ଗୋଟିଏ ନଛାଟିଆ ଜାଗାରେ ପୋତ ଦେଇ ଆସେ ।

ନାକ ଫୋଡ଼ା ହୋଇ ଛୋଟ ମାଛଟି ପାଣିରେ ଖେଳୁଥାଏ । ତାକୁ ଗିଳବାକୁ ଆସି ବଡ଼ ମାଛଟିଏ ବନ୍ଶି କଣ୍ଟାରେ ଧରା ପଡ଼େ । ମାଛ ଗିଳ ଦେଲା ପରେ କଣ୍ଟା ତା' ମୂହଁରେ ଲାଖିଯାଏ । ସେଥିରୁ ଆଉ ସେ ବାହାର ପାରେ ନାହିଁ ।

ତା' ପରେ ସେ ଛାଟି ପିଟି ହୁଏ । ପଳାଇବାକୁ ବହୁତ ଚେଷ୍ଟା କରେ । ବେଳେବେଳେ ବନ୍ଶି ଖୁଣ୍ଟକୁ ଉପାଡ଼ ନେଇ ହେଉ ଅବା ସୂତା ଛିଡ଼େଇ ହେଉ— ପଳାଏ ବ । ତେବେ ପ୍ରାୟ ଧରା ପଡ଼େ । କାହାଠାରୁ ଖବର ପାଇ ହେଉ କି ନିଜେ ଦେଖିବାକୁ ଯାଇ ହେଉ, ରଥିଆ ଭାଇ ବନ୍ଶି ଛାଏଁ ମାଛଟାକୁ ଉପରକୁ ଟେକ ଆଣେ । ବାଲିଆ, ଶେଉଳ, ଶଡଲ ଏଇ ମାଛ ସବୁ ଧରା ପଡ଼ନ୍ତି ।

ନଈରେ ପାଣି ପଡ଼ିଲେ ରଥିଆ ଭାଇକୁ ତର ମିଳେ ନାହିଁ । କୋଉଠୁ ଜିଅଳ ଖୋଜି ଆଣେ । କୋଉଠୁ ଜିଆ ଖୋଳ ଯାଇଚେ । କୋଉଠୁ ବିରୁଡ଼ି ବସା ଭାଙ୍ଗି ଆଣି, ତା'ର ଅଣ୍ଡା ଗୁଡ଼ାକୁ ବାହାର କର ରଖେ । ତାକୁ କହନ୍ତି ଥୋପ । ଯେଉଁଆକୁ ଖାଇବାକୁ ମାଛ କୁଆଡ଼େ ବାଇ । ଗୁହାଳ କଣରେ ରଥିଆ ଭାଇ ଗୋଟିଏ ମାଠିଆ ପୋତ ରଖିଚ । ଯାନ ଯାନ ଚେଙ୍ଗ, ଗଡ଼େଇ, କଣ୍ଟିଆ ଧର ଆଣି

ସେଇଥିରେ ଜୀଆଇ ରଖେ । ବନ୍ଶୀ ପୋତବା ଆଗରୁ ସେଇଥିରୁ ଗୋଟିଏ କାଢ଼ି କଣ୍ଟାରେ ଗୁନ୍ଥେ । ବଡ଼ ମାଛ ବେଳେବେଳେ ଜିଅଳକୁ ଖାଇଦେଇ ଖସି ପଳାଏ । ସେତେବେଳେ ନୂଆ ଜିଅଳ ଗୁନ୍ଥି ବାକୁ ହୁଏ ।

ମହୁଆ ଯୋଉ ବନ୍ଶୀ ଧରିଚ ସେଥିରେ କଣ୍ଟା ଲଗି ନାହିଁ । ମାଛ ଧରା ପଡ଼ିବେ କେମିତ ? ଖାଲି ସୂତା ଗିଳିଲେ ମାଛ କୋଉ ରହିବ ? ମହୁଆ କହିଲା-କେମିତ ଧରା ପଡ଼ନ୍ତି ଚାଲି ଦେଖିବୁ । ସମସ୍ତେ ତ କଣ୍ଟାରେ ମାଛ ଧରନ୍ତି । ମୁଁ ବିନା କଣ୍ଟାରେ ମାଛ ଧରି ତତେ ଦେଖେଇବି ।

ମହୁଆର ଓଠରୁ ଅହଙ୍କାର ଫୁଟି ଉଠୁଥିଲା । ଲୁଲୁ ସିନା ପାଠ ପଢ଼ି ତା'ଠୁ ବେଶି ଜାଣିଚ । ହେଲେ ଖାଲି ସୂତାରେ ମାଛ କେମିତ ଧରିବାକୁ ହୁଏ, ସେ ଜାଣି ନାଇଁ ।

ଲୁଲୁ ଆଖିରେ ମହୁଆ ଗୋଟାଏ ହିରୋ ହୋଇଗଲା ।

ଲୁଲୁ କାଳସୀ ଦେଖିବାକୁ ଭୁଲିଯାଇ ମହୁଆ ପଛେ ପଛେ ଚାଲିଲା । କିଛି ବାଟ ଗଲା ପରେ ନଈ କୂଳ ଦେଖାଗଲା । ଅତଡ଼ ତଳକୁ ପାଣି ଧାର । ଏବେ ନୂଆ ପାଣି ପଡ଼ିଚ । ସେଇଥି ପାଇଁ ମାଛ କୁଆଡ଼େ ବହୁତ ଆସିଛନ୍ତି ।

ଗଛ ଛାଇରେ ମହୁଆ ମାଛ ଧରିବା ପାଇଁ ପ୍ରସ୍ତୁତ ହେଉଥିଲା । ଲୁଲୁ ତା' ପାଖରେ ଠିଆ ହୋଇ ଦେଖୁଥିଲା ।

ମହୁଆ ମୋଟା ଗୋଟିଏ ନଡ଼ିଆ ଖଡ଼ିକାର ମୁନିଆ ପଟଟିକୁ ରଖି ପଛପଟ ଦାନ୍ତରେ କାମୁଡ଼ି ଟିକିଏ କଣା କରିଦେଲା । ସେ ହୋଇଗଲା ଗୋଟିଏ ଛୁଞ୍ଚି । ତା' ପରେ ସେଇ କଣାବାଟେ ସୂତା ଗଳେଇ ଦେଲା । ସେଇଠୁ ଘଡ଼େଇ ମୁହଁରୁ ଯାରୁ ପତ୍ର କାଢ଼ି ଦେଲା । ତା' ଭିତରେ ମାଟି ମେଞ୍ଚା। ସେଥିରେ ଯାଲୁ ଯାଲୁ ହେଉଛନ୍ତି ଲମ୍ବ ଲମ୍ବ ଜିଆ ସବୁ ।

ମହୁଆ ଗୋଟିଏ ଜିଆ ଉଠେଇ ଆଣିଲା । ତା'ର ଗୋଟିଏ ପଟ ଖଡ଼ିକାରେ ଫୋଡ଼ି ଦେଇ ଆସ୍ତେ ଆସ୍ତେ ସୂତା ଆଡକୁ ଟାଣି ନେଲା । ବାସ୍, ପୂରା ଜିଆଟି ଲମ୍ବ ବାଟେ ସୂତାରେ ଗୁନ୍ଥି ହୋଇଗଲା ।

ଏମିତ ଚାରି ପାଞ୍ଚଟି ଜିଆ ସେ ସୂତାରେ ଗୁନ୍ଥି ପକାଇଲା ।

ଖୁବ୍ ଅଳ୍ପ ସମୟ ଭିତରେ ମହୁଆ ତା'ର ସବୁ ଯାକ ବନଶି ଖଡ଼ାରେ ଜିଆ ଗୁନ୍ଥି ପକାଇଲା । ତା'ପରେ ସେଇ ଜିଆ ମାଳକୁ ଧରି ନେଇ କୂଳକୁ ବାହାରିଲା ।

ଲୁଲୁକୁ କହିଲା - ଆ ଦେଖିବୁ । ଏଇଥିରେ ବନା କଣ୍ଟାରେ ମୁଁ କେମିତ ମାଛ ଧରିବ ।

ଲୁଲୁ ଲୋଭ ସମ୍ଭାଳି ପାରିଲା ନାହିଁ । ସାରା ଦୁନିଆରେ କେତେ କଥା ଜାଣିବାକୁ ଅଛି । ତା'ର ବହି ପତ୍ରର ସଂସାରରେ ଏ ପାଠ ଲେଖା ହୋଇ ନାହିଁ । ଅଥଚ ଏମାନେ ମୋଟେ ପାଠ ନ ପଢ଼ି ବି ଏ ସବୁ ଜାଣନ୍ତି । ଲୁଲୁ ନିଜକୁ ବଡ଼ ଛୋଟ ମଣୁଥିଲା ।

ଅତଡ଼ା ଉପରେ ମହୁଆ ନିଜ ପାଇଁ ଗୋଟିଏ ଭଲ ଜାଗା ଖୋଜୁଥିଲା । ଗଉଡ଼ ସାହି, ଭଣ୍ଡାର ସାହି, ଗୁଡ଼ିଆ ସାହି, ବାଉରି ସାହିର କେତେ ପିଲା ପାଣି କୂଳରେ ବନ୍ଶି ଧରି ବସିଯାଇଛନ୍ତି ।

ବଗ ମାଛକୁ ଅନାଇ ବସିଲା ପରି ସୂତାକୁ ଅନାଇ ରହିଛନ୍ତି । ବେଳେବେଳେ ସୂତାକୁ ଉପରକୁ ଛାଟି ଆଣୁଛନ୍ତି । ଥରେ ଥରେ ସେଥିରେ ମାଛ ଲାଗି ଆସୁଛନ୍ତି । କେତେବେଳେ ଅବା ଖାଲି ।

ମହୁଆ ଏ ଭିତରେ ଟିକିଏ ଦୂରକୁ ଚାଲି ଯାଇଥିଲା । ସେ ପଟକୁ କେହି ଯାଇ ନାହାନ୍ତି । ଅତଡ଼ା ଉପରେ ଠିଆ ହୋଇ ତଳକୁ ଓହ୍ଲାଇବାକୁ ବାଟ ଖୋଜୁଥିଲା ।

ଲୁଲୁ ତଳକୁ ଅନାଇଲା । ପାଣି ଯାଇଁ କେତେ ତଳେ । ନଈ ପେଟରେ । ତଳକୁ ଚାହିଁଲେ ମୁଣ୍ଡ ବୁଲାଇ ଦେଉଚି । ସେଇ ପାଣି ପାଖରେ କେମିତି ପହଞ୍ଚିବ ମହୁଆ ?

ମହୁଆର କିନ୍ତୁ ମୋଟେ ଚିନ୍ତା ନାହିଁ । ଅତଡ଼ା କାନ୍ଥରେ ପାଦ ରଖି ସେ ଗୁଣ୍ଡୁଚି ମୂଷା ଭଳି ତର ତର ହୋଇ ଓହ୍ଲାଇ ବାକୁ ଲାଗିଲା । ଲୁଲୁ ସେମିତ ଉପରେ ଠିଆ ହୋଇଥାଏ ।

ପାଣି ପାଖରେ ପହଞ୍ଚିଯାଇ ମହୁଆ ଉପରକୁ ଅନାଇଲା । ଲୁଲୁ ଠିଆ ହୋଇଚି । ମହୁଆ କହିଲା କରେ, ସେମିତ ଠିଆ ହୋଇଚୁ କାହିଁକି । ଖୁଣ୍ଟ ନେଖା । ତଳକୁ ଓହ୍ଲାଇ ଆ ।

ଲୁଲୁକୁ ଡର ମାଡ଼ୁଚ । ଯଦ ଗୋଡ ଖସିଯାଏ । ତେବେ ଏକାଥରେ ଯାଇଁ ପାଣି ଭିତରେ । ଏଠି ତ ନଇ ବାଙ୍କ ବୁଲଚ । ସୁଅ ଭରି ଖର । ବଡ଼ ବଡ଼ ମଳ ମଳ ଘୁଞ୍ଚୁ ଦେଖା ଯାଉଚ । ଲୁଲୁକୁ ପହଁର ଆସେ ନାହିଁ ।

ମହୁଆ ବିରକ୍ତ ହେଲଣି । ତା'ର ଆଉ ନଷ୍ଟ କର-ବାକୁ ସମୟ ନାହିଁ । ଏ ବାବୁ ଘର ପିଲା ଗୁଡ଼ାକ କୌଣ କାମ●ର ନୁହଁନ୍ତି । ଗଛଟାରେ ଚଢ଼ି ପାରିବେ ନାହିଁ କି ପାଣିରେ ପହଁର ପାରିବେ ନାହିଁ । ଖାଲି ପାଠ ପଢ଼ିଲେ କ'ଣ ନାଁ ବାହାରିବ ?

ମହୁଆ ଏଥର କହିଲା କରେ ଡର ମାଡୁଚ ? ତୁ କ'ଣ ଝିଅ ପିଲା ହୋଇଚୁ ? ଦେଖିଲୁଟି, ମୁଁ କେମିତି କାନ୍ଥି ଫାଟରେ ଗୋଡ଼ଦେଇ ସହଜରେ ତଳକୁ ଓହ୍ଲେଇ ଆସିଲି ! ସେମିତି ଚାଲିଆ।ମୋଟେ ପଡ଼ିବୁ ନାଇଁମ ।

ଏଇ ଗୋଟିଏ ତୁଳନାକୁ ଲୁଲୁ ଭରି ଘୃଣା କରେ । ତା'ର କେମିତି ଧାରଣା ଝିଅ ପିଲାମାନଙ୍କ ହାତରେ କିଛି କାମ ହେବ ନାହିଁ । ମହୁଆ ଅଜାଣତରେ ତା'ର ଭରି ଦୁର୍ବଳ ଥାନଟିକୁ ଛୁଇଁ ଦେଇଚ ।

ଲୁଲୁ ଆଉ ଡେରି କଲା ନାହିଁ । ଅତଡ଼ରେ ଓହ୍ଲାଇବାକୁ ଲାଗିଲା । କାମଟି ମୋଟେ ସହଜ ନୁହେଁ । ଖାଲି ବର୍ଷା ପାଣି ବହି ଯାଇ ଛୋଟ ଛୋଟ ଥାକ ଭଳି ଯୋଉ ଜାଗା ତିଆରି ହୋଇଚ ସେଇଠି ଆଙ୍ଗୁଠି ଥୋଇ ତଳକୁ ଓହ୍ଲାଇ ବାକୁ ପଡ଼ିବ ।

ଉପରୁ ଓହଳିଚ ଲମ୍ବ ଲମ୍ବ ଘାସ । ହାତରେ ସେଇଆକୁ ଧରି ତଳକୁ ଅନାଇ ଆଙ୍ଗୁଠି ରଖିବାକୁ ଜାଗା ଖୋଜିବାକୁ ପଡ଼ିବ । ଏଣେ ଯଦି ଘାସ ତକ ଉପୁଡ଼ି ଗଲା, ତେବେ ତ ଆଉ କଥା ନାହିଁ । ଏକା ଥରକେ ନଈ ଭିତରେ ।

ବହୁତ ସମୟ ପରେ ଲୁଲୁ ଯାଇ ମହୁଆ ପାଖରେ ଠିଆ ହେଲା । ପରିଶ୍ରମରେ ତା' ଦେହରୁ ଧାର ଧାର ଝାଳ ବୋହି ଯାଉଚି । ପ୍ୟାଣ୍ଟ୍ ସାର୍ଟରେ ମେଞ୍ଚା ମେଞ୍ଚା କାଦୁଅ ଲାଗିଚି । ଗୋଡ଼ ପେଣ୍ଡାରେ ଲମ୍ବ ଗୋଟାଏ ଆଞ୍ଚୁଡ଼ା ଦାଗ । ସେଥିରୁ ରକ୍ତ ଥୋପି ପଡ଼ୁଚି । ତଥାପି ସେ ଗଡ଼ ଜିଣିଚି । କାହାରି ସାହାଯ୍ୟ ନ ନେଇ ତଳକୁ ଓହ୍ଲାଇ ଆସିଚି ।

ମହୁଆ ବି ଚୁପ୍ ଚାପ୍ ବସି ରହି ନାହିଁ । ଚାରୋଟି ଯାକ ବନଶିକୁ ଚାରି ଜାଗାରେ ଥୋଇ ଦେଇଚି । ସୂତାରେ ଟାଣ ପଡ଼ିବା ମାତ୍ରେ ଜଣେ ପୋଖତ ଶିକାରୀ ଭଳି ଖଡ଼ା ଉଠାଇ ତାକୁ ଉପର ଆଡ଼କୁ ଛାଟି ଆଣୁଚି । ଜିଆ ଥୋପର ଲୋଭରେ ସୂତା ମିଶା ଜିଆକୁ ଗିଳୁଥିବା ବା ଗିଳି ସାରିଥିବା ଚିଙ୍ଗୁଡ଼ିଟି ବିଚରା ଏକା ବେଳକେ ଆସି ମାଟି ଉପରେ ପଡ଼ୁଚି ଆଉ ମହୁଆ ଖପ୍ କରି ତାକୁ ମାଡ଼ି ବସି ଖାଳେଇରେ ପକାଇ ଦେଉଚି ।

ଥରେ ଅଧେ ଉପରକୁ ଉଠୁ ଉଠୁ ଚିଙ୍ଗୁଡ଼ିଟା ପାଣି ଭିତରକୁ ବି ଖସି ପଡ଼ୁଥାଏ । ମହୁଆ ତାକୁ ଗୋଟାଏ ଖରାପ ଗାଳିଦେଇ ତା, ଉପରେ ନଜର ରଖି ସୁଝାଇ ଚଢ଼ଉଥାଏ ।

ଲୁଲୁ କିଛି ବେଳଯାଏ, ମହୁଆର ଏଇ ମାଛଧରା ଦେଖିଲା । ସୂତାରେ ବନ୍ଧା କଣ୍ଟାରେ କେତେ ଚଞ୍ଚଳ ମହୁଆ ମାଛ ଧରି ଖାଲେଇ ଭର୍ତ୍ତି କରିବାରେ ଲଗିଚି !



ମାଛ ଗୁଡ଼ା କ'ଣ ଏତେ ବୋକା ? ଜିଆ ଖାଇବାର ଲୋଭରେ ସୂତାଟାକୁ ଗିଳି ପକାଇବାରୁ ସିନା ଏମିତି ଧରାପଡ଼ୁଛନ୍ତି ! ଲୋଭଟା ଟିକିଏ କମ୍ କରୁଥିଲେ, ସେମାନଙ୍କର ଏ ଦୁର୍ଦ୍ଦଶା ହୁଅନ୍ତା କାହିଁକି ?

ଆଗରେ ସୁସୁ କରି ଗୋଳିଆ ପାଣିର ଧାର ବହି ଯାଉଚି । ଏ ପାଖରେ କେହି ଲୋକ ବାକ ବି ନାହାନ୍ତି । ଜାଣିଶୁଣି ମହୁଆ ଏ ନିଛାଟିଆ ଜାଗାଟିକୁ ବାଛିଚି । ବେଶି ଲୋକରେ କୁଆଡ଼େ ମୂଷା ମରେ ନାହିଁ ।

ପାଣି ଆଡକୁ ଅନାଇ ଲୁଲୁ ତା'ର ସାର୍‌ଙ୍କ କଥା ମନେ ପକାଉ ଥିଲା । ସାର ଥରେ କହୁଥିଲେ ଅତି ଲୋଭରୁ ମୃତ୍ୟୁ' । ମାଛ ମାନଙ୍କର ସେଇଆ ହେଉଛି ।

ଲୋଭରେ ଟାଣି ହୋଇ ଆସୁଛନ୍ତି ଯେମିତ ମରୁଛନ୍ତି ସେମିତ । କିଏ କ'ଣ କରିବ ?

ଏଠି ଲୁଲୁ ପାଇଁ କିଛି କାମ ନ ଥିଲା । ଥରେ ଅନାଡ଼ ହାତରେ ମହୁଆର ଗୋଟିଏ ବନ୍‌ଶୀ ଖଡ଼ା ଉଠାଇ, ଅଧାବାଟରେ ମାଛଟି ଖସି ପଡ଼ିବାରୁ, ମହୁଆ ଠାରୁ ଗୋଟାଏ ଧମକ୍ ଖାଇ ତା'ର ମନ ମରି ଯାଇଥାଏ ।

ତା'ର ଡର ଥାଏ, ମହୁଆ ତାକୁ ଖରାପ ଭାଷାରେ ଗାଳି ଦେବ । ତା' ଆଗରୁ ଏଠୁ କେମିତ ଚୁପ୍ ଚାପ୍ ଖସି ଚାଲିଗଲେ ବରଂ କାଳିସୀ ନାଚ ଦେଖି ହେବ । ଭାଲୁଆଟା ହେଲେ ଏତେବେଳେ ପାଖରେ ଥାଆନ୍ତା !

ଲୁଲୁ ଫେରିଯିବା ପାଇଁ ଅତଡ଼ ଉପରକୁ ଅନାଇଲା । ତେବେ ସେ ପାଦ ବଢ଼ାଇବା ଆଗରୁ ମୋଡ଼ ଆରପଟରୁ ଗୋଟିଏ ହାଉ ହାଉ ପାଟି ତୁଣ୍ଡ ଶୁଣାଗଲା ।

ମହୁଆ ବି କାନଡେ଼ରି ସେଇଆଡ଼େ ଅନାଇ ରହିଲା ।



## ମିଠା ଗୀତ ପଦେ

ବେଶି ଡେରି ହେଲା ନାହିଁ । ବାଙ୍କ ବୁଲି ଗୋଟାଏ ହୁଲି ଡଙ୍ଗା ପାଣିରେ ଭସି ଯାଉଥିବାର ଦେଖାଗଲା । ପାଟି ଭୁଣ୍ଡ ଶୁଣା ଯାଉଚ ସେଇ ଡଙ୍ଗାରୁ ।

ଡଙ୍ଗାରେ କାତ ଧରି ଠିଆ ହୋଇଚ ଶତ୍ରୁଘ୍ନ, ବେଳେ ବେଳେ ପାଣିରେ କାତ ଭିଡ଼ି ଡଙ୍ଗାକୁ ରୋକିବାକୁ ଚେଷ୍ଟା ବି କରୁଚ । ହେଲେ ସବୁଥର କାତ ତା' ହାତରୁ ଖସି ଯାଉଚ ଆଉ ଡଙ୍ଗା ବି ଥର ଥର ହୋଇ କମ୍ପି ଯାଉଚ ।



ଡଙ୍ଗାରେ ଶତ୍ରୁଘ୍ନ ଏକା ନାହିଁ । ଆଉ ଜଣେ ବି ଅଛି । ଲୁଲୁ ତାକୁ ଚଢେଇଛି । ସେ ଭଗିଆ ମାଳୀ ପୁଅ ଛୋପରା । ପାଟି କରୁଚ ସେଇ । ତେବେ ସେ ଏତେ ଡର

ଯାଉଚ ଯେ, ତା' କଥା କିଛି ବୁଝାଯାଉ ନାହିଁ । ଶୁଭୁଚ ଗୋଟାଏ ହାଉ ହାଉ ପାଟି ।

କିଛି ବେଳ ପରେ ଡଙ୍ଗା ତାଙ୍କ ଆଗ ଦେଇ ତଳକୁ ଭାସିଯିବ । ଆଗରେ ଆଉ ଗୋଟାଏ ବାଙ୍କ ମୁଣ୍ଡରେ ଅଛି ଖୁବ୍ ବଡ଼ ଝଙ୍କାଳିଆ ଗୋଟାଏ ହିଞ୍ଜଳ ଗଛ । ନଈ ଭିତରକୁ ନଇଁ ପଡ଼ିଚ । ତା' ଚେର ମୂଳ ସବୁ ନଈ ଭିତରେ ଦାନ୍ତ ଦେଖେଇ ଠିଆ ହୋଇଛି । ଡଙ୍ଗା ଯାଇଁ ଯେଉଁଠି ବାଡ଼େଇ ହୋଇଯିବ । ସେଠି ପୁଣି ଗୋଟାଏ ଗଣ୍ଡ, ଅକାତକାତ ପାଣି । କ'ଣ ହେବ ପିଲା ଦ'ଟାଙ୍କ ଅବସ୍ଥା !

ସେଇ ଆଡ଼କୁ ଅନେଇ ମହୁଆ ବ ଠିଆ ହୋଇ ପଡ଼ିଲାଣି । ଗୋଟାଏ ଚତୁର ମାଛ ଯେ, ଏ ଭିତରେ ସୂତା ଗିଳି ବନ୍ଶୀ ଖଡ଼ାକୁ ପାଣି ଭିତରକୁ ଟାଣି ନେବାରେ ଲାଗିଚ, ସେ ଆଡ଼କୁ ମହୁଆର ନଜର ନାହିଁ । ସେ ତା'ର ନିତ ଦିନିଆଁ ଭାଷାରେ ଶତ୍ରୁ ଉପରେ ଗାଳି ବର୍ଷଣ କରିବାରେ ଲାଗିଚ ।

ମହୁଆ କହୁଥିଲା – ହ୍ୟାପ୍ ଲୁଣ୍ଡା ବେଅକଲୀ । ବିଛା ମନ୍ତ୍ର ନ ଜାଣି ସାପ ଗାଡ଼ରେ ହାତ ଭର୍ତ୍ତି କରିଚ । ପାଉଥା ଏଥର ମଜା—ଆପେତ ଯିବ—ତ'ା ସାଙ୍ଗରେ ଆଜି ଭଗିଆ ଘରେ କାନ୍ଦ ବୋବାଳି ପଡ଼ିବ !

ଲୁଲୁ କ'ଣ କରିବ କିଛି ଭାବି ପାରୁ ନାହିଁ । ଦେଖୁ ଦେଖୁ ତା'ର ଆଗରେ ପିଲା ଦ'ଟା ବୁଡ଼ି ମରିବେ ? ସେ

ଥରେ ପାଣି ଆଡ଼କୁ ଅନାଉ ଥାଏ,ଆଉ ଥରେ ମହୁଆ ଆଡ଼କୁ । ଓଙ୍ଗା ବ ଏଣେ ପାଖେଇ ଆସିଲାଣି ।

ଲୁଲୁ ଅତଡ଼ କୂଳେ କୂଳେ ଓଙ୍ଗା ସାଙ୍ଗରେ ଦୌଡ଼ିବାକୁ ଆରମ୍ଭ କରଦେଲା । ମହୁଆ ତାକୁ ପଛରୁ



ଡାକ କରୁଥାଏ – ଆରେ ଯା'ନାରେ । ଗୋଡ଼ ଖସି ପାଣିରେ ପଡ଼ିଲେ ତୋର ବ ସେ ଦଟାଙ୍କ ଭଳ ଦଶା ହେବ ।

ଲୁଲୁ କାନରେ ମହୁଆର କଥା ପଶୁ ନଥାଏ । ତା' ଆଖି ଓଙ୍ଗା ଉପରେ ।

ହଠାତ ସେଇ ଅଘଟଣଟି ଘଟିଗଲା । ଅତଡ଼ ଉପରୁ ବଡ଼ ଅତଡ଼ା ଖଣ୍ଡେ ଖସି ପଡ଼ିଲା । ଲୁଲୁର ଆଉ କୁଆଡ଼କୁ ନଜର ନାହିଁ । ସେ କଣ୍ଟେ ମାଟି ତଳେ ଘୁପି ହୋଇ

ଯାଇଥାଆନ୍ତା, ଆଉ ତା'ପରେ ସମ୍ଭାଳି ନ ପାରି ପାଣିକୁ ଖସି ପଡ଼ି କାହିଁ କୁଆଡ଼େ ଭସି ଯାଇଥାଆନ୍ତା ।

ମାଛ ଧରିବାର ମୋହ ଛାଡ଼ି ମହୁଆ ଯେ ଲଲୁ ପଛରେ ଧାଇଁ ଆସିଚି, ଏକଥା ତାକୁ ଜଣା ନାହିଁ । ହଠାତ୍ 'ଲୁଲୁ' ବୋଲି ପାଟିଟାଏ କରି ମହୁଆ ତା' ଉପରକୁ ଡେଇଁ ପଡ଼ିଲା । ଦି' ଜଣ ଯାକ ପାଣି ଭିତରକୁ ଖସି ପଡ଼ିଲେ ! ଏଣେ ପାଣି କୂଳ କମ୍ପାଇ 'ଧୁପ୍' କରି ଶବ୍ଦରେ ବଗିଚ ଅତଡ଼ା ପାଣି ଭିତରକୁ ଖସି ପଡ଼ିଲା । ଦି'ଟା ଯାକ କଥା ପ୍ରାୟ ଏକା ସାଙ୍ଗରେ ଘଟିଗଲା ।

ମହୁଆ ଧରିଚି ଲୁଲୁର ସାର୍ଟକୁ । ଅତଡ଼ି କୂଳରେ ପାଣି ଯେ କାହିଁରେ କେତେ ଗୋଡ଼ ପାଉ ନାହିଁ । ତେବେ ଭାଗ୍ୟକୁ ନଈଟା ତା' ଆଗରୁ ବାଙ୍କ ବୁଲିଯାଇ ଥିବାରୁ ସେଠି ସୁଅର ତୋଡ଼ ସେତେ ବେଶି ନୁହେଁ ।

ମହୁଆ ନଈ କୂଳିଆ ଛେଉଣ୍ଡପିଟା ପିଲା । ଏଇ ବୟସରୁ ତା'ର ଛାତି ଆଉ ବାହାର ଗୁଲି ଗୋଲ୍ ହୋଇ ଦେଖା ଗଲାଣି । ସେ ବୀର ବିକ୍ରମରେ ନଈ ସହିତ ଲଢ଼ିଯାଉଚି ।

କେଇ ଥର ହିର୍ଗି ବୁଡ଼ା ଖାଇବା ପରେ ସେ ଲୁଲୁକୁ ଧରି ଅତଡ଼ି କାନ୍ଥିକୁ ଆଉଜେଇ ଦେଲା ଆଉ ଆପେ ବି ପାଣି କୂଳକୁ ଚାଲି ଆସିଲା । ଲୁଲୁର ବେଶି କିଛି ହୋଇ ନାହିଁ । ଢୋକେ ଦି ଢୋକ ପାଣି ପିଇ-ଯାଇଛି ଯାହା । ଏଥର ସେ ଆପେ ଆପେ କୂଳ ଉପରକୁ

ଉଠି ପଡ଼ିଲା । ଯେଉଁଠି ଠିଆ ହେବା ଭଳି ଟିକିଏ ଜାଗା ଥିଲା ।

ଏଥର ସେ ପାଣି ଉପରକୁ ନଜର ଦେଲା । ଡ଼ଙ୍ଗା ପ୍ରାୟ ପାଖେଇ ଆସିଲାଣି । ହୁଞ୍ଚାଳ ମୋଡ଼ ବ ଆଉ ବେଶି ବାଟ ନାହିଁ । ସୁଅର ତୋଡ଼ରେ ଡ଼ଙ୍ଗା ଭସି ଯାଉଚ । ଛୋପଗ୍ରର ମୁହଁ ଭୟରେ କଳା ପଡ଼ି ଗଲାଣି । ଶଗୁଗ୍ର ବ କାଠ ହୋଇ ଠିଆ ହୋଇଚ । ହୁଁ କାଳ ଗଛ ତା' ଆଖିରେ ନାଚୁଚ ।

ଜ୍ରୁଜ୍ରୁ ପାଟି କରି କହିଲା, ଶଗୁଗ୍ର କାତଟା ମୋ ଆଡ଼କୁ ବଢ଼ାଇ ଦେ । ନଈର ଘୋ ଘୋ ଯୋ ଯୋ ଶବ୍ଦରେ ଜ୍ରୁଜ୍ରୁର କଥା ଶଗୁଗ୍ରର କାନରେ ପଡ଼ିଲା କି ନାହିଁ କିଏ ଜାଣେ ?

ଜ୍ରୁଜ୍ରୁ ତାକୁ ଆଉଥରେ ସେଇ କଥା କହିଲା । ଏଥର ଶଗୁଗ୍ର ଦେହରେ ଯେମିତ ଜୀବନ ପଶିଲା । ସେ ଥର ଥର ହାତରେ କାତକୁ କୂଳ ଆଡ଼କୁ ବଢାଇ ଦେଲା ।

ହେଲେ କାତ କୂଳକୁ ପାଉ ନାହିଁ । ଫୁଟେ ଛ ଇଞ୍ଚ ଦୂରରେ ରହିଯାଉଚ । ଅତଡ଼ କୂଳରେ ଦୌଡ଼ିବା ପାଇଁ ଜ୍ରୁଜ୍ରୁର ବ ଆଉ ସାହସ ହେଉ ନାହିଁ ।

ଏତିକିବେଳେ କୋଉଠି ଥିଲା ଗଲୁଆ, ସିଧା ଅତଡ଼ ଉପରୁ ନଈ ପାଣିକୁ ଡେଇଁ ପଡ଼ିଲା । ପାଣିରେ ପହଁରି

ପହଁରି ଯାଇ ଡଙ୍ଗା ପାଖରେ ପହଞ୍ଚିଗଲା । କୂଳରେ ଡଙ୍ଗା ବାନ୍ଧିବାକୁ ମଙ୍ଗରେ ଖଣ୍ଡେ କତା ଦଉଡ଼ା ଝୁଲୁଥାଏ ।



ଏବେ ସେଇ ଖଣ୍ଡକ ଡଙ୍ଗାରୁ ଓହଳ ପଡ଼ି ପାଣିରେ ଭାସି ଭାସି ଯାଉଥାଏ । ଭଜୁଆ ମୁହଁରେ ସେଇ ଖଣ୍ଡକ ପଡ଼ିଲା । ସେ ତାକୁ ପାଟିରେ ଧରି କୂଳ ଆଡ଼କୁ ପହଁରିବାରେ ଲାଗିଲା ।

ହୁଲି ଡଙ୍ଗା ହେଲେ ବି ଜିନିଷଟି ନିହାତି ଛୋଟ ନୁହେଁ । ତା' ଉପରେ ଯୋଡ଼ାଏ ମଣିଷ ପିଲାର ବୋଝ । ଆହୁରି ପାଣି ସୁଅର ତୋଡ଼ । ଭଜୁଆ ଡଙ୍ଗାକୁ କୂଳକୁ ଆଣିବ କଣ, ନିଜେ ଡଙ୍ଗା ସାଥିରେ ଭାସି ଚାଲିଲା ।

ତେବେ ଗୋଟାଏ କଥା ହେଲା । ଭଜୁଆର ଟଣା ଟଣିରେ ଡଙ୍ଗାଟି କୂଳ ଆଡ଼କୁ ହାତେ ଖଣ୍ଡେ ଘୁଞ୍ଚି ଆସିଲା । ଶତ୍ରୁଘ୍ନ ଏତେବେଳେ ଯାଏ ବି କାନ୍ତ ବଢ଼େଇ ଠିଆ ହୋଇଛି ।

ନିଜ ଜୀବନକୁ ପାଣି ଛଡ଼େଇ ଲୁଲୁ ପାଣି କୂଳରେ ଥୋଡ଼ାଏ ବାଟ ଦଉଡ଼ ଯାଇ କାତଟାକୁ ଧରି ପକାଇଲା ।

ଧରି ସିନା ପକାଇଲା । ହେଲେ ଏଣେ ତା' ଅବସ୍ଥା କାହିଲ୍ । ଓଦା କାତଟା ହାତରୁ ଏଇ ଖସିଲା କି ସେଇ ଝସିଲା । ସୁଅ ତୋଡ଼ରେ ତେଣେ ଡଙ୍ଗା ଦୋହଲୁଛି । ଏଣେ ଲୁଲୁର ପାଦ ବି ଟଳମଳ ହେଉଛି । ଆଉ ଟିକକରେ ସେ ଯେମିତି ପାଣିରେ ପଡ଼ିଯିବ ।

ଡଙ୍ଗାଟି କାତର ଟଣାଟଣିରେ ଟିକଏ ସ୍ଥିର ହୋଇଛି କି ନାହିଁ, ବାଲୁଆ ଲମ୍ବ ମଙ୍ଗ ଦଉଡ଼ିକୁ ଧରି କୂଳକୁ ପହଁରି ଆସିଲା । ମହୁଆତ ଯେଉଁଠି ଠିଆ ହୋଇଥିଲା, ସେ ବି ଆଉ ଡ଼େରି ନକରି ପାଣି ଭିତରକୁ ଖସି-ବାଲୁଆ ମୁହଁରୁ ଦଉଡ଼ିଟାକୁ ଧରି ପକାଇଲା ।



ବାଲୁଆ ତା'ର କାମ ଶେଷ କରି ଏଥର କୂଳ ଉପରକୁ ଉଠି ଆସିଲା । ହାତରେ ଦଉଡ଼ି ପଡ଼ିବା ପରେ

ମହୁଆ ଅତଡ଼ କାନ୍ଥିକୁ ଧରି ପକାଇ ଠିଆ ହୋଇଗଲା । ଡଙ୍ଗାର ନଚ୍ଚନଚ ବନ୍ଦ ହୋଇଗଲା ।

ଜୁଜୁ ଏଥର କାତ ଛାଡ଼ିଦେଇ ମହୁଆ ପାଖକୁ ଧାଇଁ ଗଲା । ତା' ହାତରୁ ଦଉଡ଼ିକୁ ଧରି ଦମ୍ଭ ହୋଇ ଠିଆ ହେଲା । ମହୁଆ ବି ପାଣି ଭିତରୁ ଉଠି ଆସିଲା ।

ପିଲା ଦୁହେଁ ବଞ୍ଚିଗଲେ ।

ଅତଡ଼ା ଉପରେ କାମ କରୁଥିଲେ କିଛି ମୂଲିଆ । ସେମାନଙ୍କ କାନରେ ଛୋଟପିଲାଙ୍କ ହାଉହାଉ ଡ଼ାକ ପଡ଼ିଚି । ହେଲେ ସେମାନେ ସେଆଡ଼େ ସେତେ ନଜର ଦେଇ-ନାହାନ୍ତି । ତେବେ ସେଠିଣେ ଘାଟରେ ଡ଼ଙ୍ଗା ନ ଦେଖି ଘାଟିଆ ବୀର ସେଠି, ଡଙ୍ଗା ଭାସିଗଲା, ଡଙ୍ଗା ଭାସିଗଲା ହାଲ୍ଲା କରି ନଈ କୂଳେ କୂଳେ ଧାଇଁଛି ।

ଏତିକିବେଳେ ନଈ ଭିତରୁ ପାଟି ତୁଣ୍ଡ ଶୁଣି ସେଠି କ'ଣ ହଉଚି ଦେଖିବାକୁ କିଛି ଲୋକ ଅତଡ଼ ଉପରକୁ ଚାଲି ଆସିଛନ୍ତି । ସବୁ ଜିନିଷ ସେମାନଙ୍କ ଆଖିରେ ପଡ଼ିଚି ।

ଏଥର ଘର ବାହୁଡ଼ା । ଜୁଲୁ ଜାଣେ କଥା ଲୁଚି ରହିବ ନାହିଁ । ଦେହ ଖରାପ ଥିବାରୁ ସେ ଆଜି ସ୍କୁଲକୁ ନଯାଇ ଘରେ ଥିଲା । ତା' ଭିତରେ ଯେ ଏତେ କାଣ୍ଡ ଘଟିଗଲାଣି, ତା'ଘର ଲୋକେ ଜାଣି ନାହାନ୍ତି ।

ତା' କପାଳରେ ଆଜି ବହୁତ ଦୁଃଖ ଅଛି । ତେବେ ଲୁଲୁର ସେଥିପାଇଁ ବିଶେଷ ଚିନ୍ତା ନ ଥିଲା । ସେ ଜାଣି-ଥିଲା, ବାପା ଯଦି ଜାଣିପାରିବେ ଯେ, ନିଜ ଜୀବନକୁ ପାଣି ଛଡେଇ ଆଜି ସେ ଦୁଇଦୁଇଟା ନିରୀହ ପିଲାଙ୍କର ଜୀବନ ବଂଚେଇଛି, ତେବେ ସେ ନିଶ୍ଚୟ ଖୁସି ହେବେ । ବୋଉ ଟା ପାଟିତୁଣ୍ଡ କରିବ । କାନ୍ଦି ପକେଇବତ ନିଶ୍ଚେ । ହେଲେ ସବୁ କଥା ବୁଝିଗଲେ, ସେ ବି ଖୁସି ହେବ ଯେ ।

ଦିନେ ସେ ଭାଲୁଆର ଜୀବନ ବଂଚେଇ ଥିଲା । ଆଜି ସେ ତା'ର ଋଣ ସୁଝି ଦେଇଛି । ଓଦା ହାତରେ ଲୁଲୁ ଭାଲୁଆକୁ ଆଉଁସି ପକାଉଥାଏ, ଆଉ ଭାଲୁଆ ବି ଲାଙ୍ଗୁଡ଼ ହଲାଉ ହଲାଉ ସତେ ଯେମିତି କହୁ-ଥାଏ ତୁ ପରା ମୋର ଏତେ ସାଙ୍ଗ । ତୁ ବିପଦରେ ପଡ଼ିବା ଦେଖି ମୁଁ କେମିତି ଚୁପ୍ ହୋଇ ବସି ଥାଆନ୍ତି ?

